ପୁସ୍ତକର ନାମ : **ଶ୍ରୀକ୍ଷେତ୍ର ଭ୍ରମଣ**

ଲେଖକ : ଅଧ୍ୟାପକ **ଗୌରୀକୁମାର ବ୍ରହ୍ମା**

ପ୍ରକାଶକ : **ବ୍ରହ୍ମା ପ୍ରକାଶନୀ,**
ରଥଦାଣ୍ଡ, ମାଉସୀମା ମନ୍ଦିର ନିକଟ,
P.O. ଭୁବନେଶ୍ୱର-୨ (ଓଡ଼ିଶା)

ପ୍ରଥମ ସଂସ୍କରଣ—୧୯୮୯

ମୁଦ୍ରାକର : **ଶ୍ରୀ କିଶୋରଚନ୍ଦ୍ର ମିଶ୍ର**
ଗୋଦାବରୀଶ ପ୍ରେସ୍, କଟକ

ମୂଲ୍ୟ—**ବାର ଟଙ୍କା** (ଅବନ୍ଧା)
**ପନ୍ଦର ଟଙ୍କା** (ବନ୍ଧେଇ)



କଲେଜରେ ମୁଁ ଅଧ୍ୟାପକ ଥିଲାବେଳେ (୧୯୫୦ ରୁ ୧୯୫୮ ମଧ୍ୟରେ)

# ସ୍ମୃତିଚାରଣ

ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗରେ କର୍ମଚାରୀ ରହିବା ଭିତରେ, ହଜାର ହଜାର ଦର୍ଶକଙ୍କୁ ପୁରୀ, ଭୁବନେଶ୍ୱର ଏବଂ କୋଣାର୍କ ବୁଲାଇ ଦେଖାଇବାର ସୁଯୋଗ ଲାଭ କରିଥିଲି । ବନ୍ଧୁ ବାନ୍ଧବଙ୍କ ଅନୁରୋଧକ୍ରମେ କୋଣାର୍କ ଏବଂ ପୁରୀ ଉପରେ ଦୁଇଟି ପୁସ୍ତକ ରଚନା କଲି । ଉଭୟର ଆକାର କ୍ଷୁଦ୍ର ହେଲେହେଁ, ପର୍ଯ୍ୟଟନ ଦୃଷ୍ଟିରୁ, ଉଭୟ ପୁସ୍ତକ ତଥ୍ୟ-ପୂର୍ଣ୍ଣ । ପୁରୀ ଉପରେ ଯେଉଁ ପୁସ୍ତକଟି ଲେଖି ୧୯୭୬ରେ ପ୍ରକାଶ କରିଥିଲି, ତାହାର ନାମ ଥିଲା 'ଜଗନ୍ନାଥ ପୁରୀ ଦେଖନ୍ତୁ' । ସେତେବେଳେ ଗଞ୍ଜାମ ଜିଲ୍ଲାର ପାତ୍ରପୁର ନିବାସୀ ମହନ୍ତ ମହାରାଜ ଶ୍ରୀ ଗୋବିନ୍ଦଚନ୍ଦ୍ର ରାମାନୁଜ ଦାସ ମହୋଦୟ ଏଭଳି ପୁସ୍ତକଟିଏ ଲେଖିବା ପାଇଁ ମତେ ବିଶେଷ ପ୍ରେରଣା ଦେଇଥିଲେ । ବର୍ତ୍ତମାନ ଏହି ଯେଉଁ 'ଶ୍ରୀକ୍ଷେତ୍ର ଭ୍ରମଣ' ପ୍ରକାଶ କଲି, ଏହା ଭିତରେ ''ଜଗନ୍ନାଥ ପୁରୀ ଦେଖନ୍ତୁ'' ପୁସ୍ତିକାଟି ଗର୍ଭିତ ହୋଇ ରହିଛି ।

୧୯୭୫ରେ, ମୁଁ କୋଣାର୍କ ଉପରେ ଲେଖିଥିବା ପୁସ୍ତକର ପାଣ୍ଡୁଲିପିଟିକୁ କଟକର ଜଣେ ସୁପରିଚିତ 'ସାହିତ୍ୟରଥୀ' ମୋଠାରୁ ନେଇଥିଲେ, ତାହାର ପ୍ରକାଶନ ବ୍ୟବସ୍ଥା କରିବା ପାଇଁ । ୧୯୭୬ ସେପ୍ଟେମ୍ବର ମାସରେ ମୋର ପୁତ୍ରଶୋକ ହେବା ପରେ ମୁଁ ଭୁବନେଶ୍ୱର କାର୍ଯ୍ୟାଳୟରୁ ଛାଡ଼ି ମୋର ପୂର୍ବ କର୍ମପୀଠ— ରେଭେନ୍ସା କଲେଜକୁ ଚାଲିଗଲି । ସେତେବେଳକୁ ମୋର ଅବସର ଗ୍ରହଣ କରିବାକୁ ଏକ ବର୍ଷରୁ କିଛିଏ ଅଧିକ ସମୟ ଥାଏ । ମୁଁ ଲେଖିଥିବା ''କୋଣାର୍କ'ବିହାର ପାଣ୍ଡୁଲିପି ଯାହାଙ୍କୁ ଦେଇଥିଲି, ରେଭେନସା କଲେଜରେ ମୁଁ ଅଧ୍ୟାପକ ଥିଲାବେଳେ (୧୯୫୦ ରୁ ୧୯୫୮ ମଧ୍ୟରେ) ସେ

ଥିଲେ ମୋର ଅତ୍ୟନ୍ତ ପ୍ରିୟ ଏବଂ ଏକାନ୍ତ ବିଶ୍ୱସ୍ତ । ତାଙ୍କ ପ୍ରାୟ ୨୫ବର୍ଷର ବ୍ୟବଧାନ ପରେ, ମୁଁ ତାଙ୍କୁ ପାଣ୍ଡୁଲିପିଟି ଦେଇଥିଲି, ଏହି ବିଶ୍ୱାସରେ ଯେ, ସେ ନିଜେ ପ୍ରତିଷ୍ଠିତ ହୋଇପାରିଥିବାରୁ ନିଜ ଗୁରୁଙ୍କୁ ସାହାଯ୍ୟ କରିବେ ।

୧୯୭୬ ଡ଼ିସେମ୍ବର ମାସରେ ମୁଁ ରେଭେନସା କଲେଜକୁ ଫେରିଯିବା ପରେ, ଏହି ମୋର ଗ୍ରନ୍ଥ-ବନ୍ଧୁଙ୍କର କାର୍ଯ୍ୟାଳୟକୁ ଅନ୍ତତଃ ଦଶ ପନ୍ଦର ଥର ଯାଇଛି, କେବଳ ମୋ ପାଣ୍ଡୁଲିପିଟିକୁ ଫେରାଇ ଆଣିବା ପାଇଁ । କିନ୍ତୁ ଶେଷରେ ହତାଶ ହୋଇ ନୀରବ ରହିଲି । 'ଗୁରୁଦେବଙ୍କ' (ଅର୍ଥାତ୍ ମୋର) ପରଲୋକ ପରେ ହୁଏତ ମୋ ପାଣ୍ଡୁଲିପିଟି (ଅନ୍ୟ କାହାର ନାମରେ) ପୁସ୍ତକ ଆକାରରେ ପ୍ରକାଶ ପାଇବ !!

କୋଣାର୍କ ଉପରେ ଇଂରାଜୀରେ ବହିଟିଏ ଲେଖିବା ପାଇଁ କେତେକ ବନ୍ଧୁ ପରାମର୍ଶ ଦେବାପରେ, ଜଣେ ବାବୁଙ୍କୁ କୋଣାର୍କ ଉପରେ ବହିଟିଏ ଡାକିଦେଲି (dictate କରିଦେଲି) । କିନ୍ତୁ ଅତ୍ୟଧିକ କର୍ମବ୍ୟସ୍ତତାରୁ ମୁଁ ତାକୁ ଛାପି ପାରିଲି ନାହିଁ । ଦିନେ ହଠାତ୍ କୋଣାର୍କଠାରେ ଦେଖିଲି, ଅନ୍ୟ ନାମରେ ପ୍ରକାଶିତ ଏକ ଇଂରାଜୀ ପୁସ୍ତକରେ ମୋ ନିଜ ଲେଖା ଅଧିକ ସ୍ଥାନ ମାଡ଼ି ବସିଛି ଏବଂ ଆଉ ଯାହା ନୂଆ କଥା ରହିଛି, ତହିଁରେ ଅ-ଠିକ୍ କଥା ବିଶେଷ ଭାବରେ ରହିଅଛି । ଏବେ ଦେଖୁଛି, ମୋର ପ୍ରିୟ ଶିଷ୍ୟ କୋଣାର୍କ ଉପରେ ମୁଁ ଲେଖିଥିବା ଓଡ଼ିଆ ପାଣ୍ଡୁଲିପିଟିକୁ ଛାପିବାର ବ୍ୟବସ୍ଥା ତ କଲେ ନାହିଁ, ତାକୁ ମତେ ଫେରାଇ ଦେବାପାଇଁ ମଧ୍ୟ ଚିନ୍ତା କଲେନାହିଁ । ଏହାହିଁ ତ ଯୁଗଧର୍ମ । ଏଥିପାଇଁ ସେ 'ଯୁଗ-ଜୟୀ' ଓ ଆମେ 'ବଳଦିଆ ଶିକ୍ଷକ ।'

"ନିଆଁ ହୁଣ୍ଡା"ର ସମ୍ପାଦକ ଶ୍ରୀଯୁକ୍ତ କିଶୋର ଚନ୍ଦ୍ର ମିଶ୍ର ଏ ପୁସ୍ତକର ପ୍ରୁଫ୍ ସଂଶୋଧନ କରିଥିବାରୁ ତାଙ୍କୁ ଧନ୍ୟବାଦ ଦେଉଅଛି । ତାହା ନ ହୋଇଥିଲେ ହୁଏତ ଶୁଦ୍ଧିପତ୍ରଟି ଆହୁରି ଲମ୍ବା ହୋଇଥାଆନ୍ତା ।

ଦଶହରା ଦଶମୀ
୧୯୮୯

ଅଧ୍ୟାପକ—ଗୌରୀ କୁମାର ବ୍ରହ୍ମା

# ବିଷୟ ସୂଚୀ





# ଶ୍ରୀ ଜଗନ୍ନାଥ ଓ ଶ୍ରୀକ୍ଷେତ୍ର ସଂପର୍କରେ କେତେକ ଜାଣିବାର କଥା

'ପୁରୀ', ଏହି ଶବ୍ଦ ଉଚ୍ଚାରଣ କଲାମାତ୍ରେ ଜଗନ୍ନାଥଧାମ କଥା ମନେପଡ଼ିଯାଏ ।

ଓଡ଼ିଶାବାସୀଙ୍କର ପରମ ଭାଗ୍ୟ ଯେ, ଜଗନ୍ନାଥ ଏଠାରେ ବିରାଜମାନ ଥିବାରୁ ଓଡ଼ିଶାର ଲୋକମାନେ ଯୁଗ ଯୁଗ ଧରି ଭାରତର ସମସ୍ତ ଅଞ୍ଚଳରେ ପରିଚିତ ହୋଇଛନ୍ତି । ଖାଲି ପରିଚିତ ହୋଇନାହାନ୍ତି, ବରଂ ଭିନ୍ନ ପ୍ରଦେଶର ଲୋକଙ୍କଠାରୁ ସେମାନେ ଯେଉଁ ସ୍ନେହ, ଆଦର ଏବଂ ସମ୍ମାନ ଲାଭକରି ଆସୁଛନ୍ତି, ତାହା କଥାରେ କହିହେବ ନାହିଁ । କେତେକ ଅଞ୍ଚଳକୁ ପୁରୀର ପଣ୍ଡାମାନେ ଗଲେ, ସେ ରାଜ୍ୟର ଲୋକେ ସେମାନଙ୍କୁ ଦେବତା ଜ୍ଞାନରେ ପୂଜା କରନ୍ତି । ନିଜ ଶୋଇବା ଘରେ ବା ଠାକୁର ଘରେ ନୂଆ ଚଦର ପକାଇ ସେମାନଙ୍କୁ ବସାଇଥାନ୍ତି । ଜଗନ୍ନାଥଙ୍କ ହେତୁ ଏ ଯେଉଁ ସମ୍ମାନ ମିଳୁଛି, ତାହା ଭାବିଲାବେଳେ ଆଖିରେ ଲୁହ ଆସିଯାଏ ।

ଭାରତର ଏହି ପବିତ୍ର ତୀର୍ଥକ୍ଷେତ୍ରକୁ ଯେଉଁମାନେ ଯାଆନ୍ତି, ସେମାନଙ୍କ ପାଇଁ ଏହି ପୁସ୍ତକ ଲେଖାଯାଇଛି । ତେବେ, ସର୍ବପ୍ରଥମେ ଯେଉଁ

କେତୋଟି କଥା ସେମାନେ ଜାଣିବା ଉଚିତ୍, ସେମାନଙ୍କୁ ତାହା ଜଣାଇ ଦେବା ପାଇଁ ଏଠାରେ ଚେଷ୍ଟା କରାଯାଉଛି ।

୧ । ପୁରୀ ଜିଲ୍ଲାର ସମୁଦ୍ରକୂଳରେ ବିଶ୍ୱବିଖ୍ୟାତ ପୁରୀ ସହର ଅବସ୍ଥିତ ।

୨ । ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରୁ ପୁରୀ ହେଉଛି ମାତ୍ର ଷାଠିଏ କିଲୋମିଟରରୁ କିଛିଏ ଅଧିକ । ଭୁବନେଶ୍ୱର ଓଡ଼ିଶାର ରାଜଧାନୀ ହୋଇଥିବାରୁ ଏଠାକୁ କପରି ଆସିବାକୁ ହେବ, ଭାରତର ସବୁ ଶିକ୍ଷିତ ଲୋକେ ଜାଣନ୍ତି । କଲିକତାରୁ ମାନ୍ଦ୍ରାଜକୁ ଯେଉଁ ରେଳଲାଇନ୍ ଯାଇଛି ଏବଂ ପାଞ୍ଚ ନମ୍ବର ଜାତୀୟ ରାଜପଥ ଯାଇଛି, ଆମ ଭୁବନେଶ୍ୱର ସହର ତାର ଉପରେ ଅବସ୍ଥିତ । ଦିଲ୍ଲୀରୁ ସିଧାସଳଖ ଉଡ଼ାଜାହାଜ ଭୁବନେଶ୍ୱରକୁ ଆସୁଛି । କଲିକତା ଓ ଅନ୍ୟ କେତେକ ବଡ଼ ସହର ସହିତ ଆକାଶଯାନଦ୍ୱାରା ଭୁବନେଶ୍ୱର ସଂଯୁକ୍ତ ହୋଇଅଛି ।

୩ । ଯେଉଁମାନଙ୍କର ସମ୍ବଳ ଅଛି, ସେମାନେ ଭୁବନେଶ୍ୱରରୁ କାର୍‌ରେ ଯାଉଛନ୍ତି । ଭୁବନେଶ୍ୱରଠାରୁ ମାତ୍ର ବାର କିଲୋମିଟର ଦୂରରେ 'ଜଟଣୀ' ରେଳ ଜଙ୍କସନ୍ ରହିଅଛି । ସେଠାରୁ ପୁରୀ ପର୍ଯ୍ୟନ୍ତ ରେଳଲାଇନ୍ ଅଛି । ତେଣୁ ପ୍ରତିଦିନ ଶହ ଶହ ଯାତ୍ରୀ ରେଳରେ ପୁରୀ ଯାଆନ୍ତି । ଭୁବନେଶ୍ୱରର ବସ୍‌ଷ୍ଟାଣ୍ଡରୁ ପ୍ରତି ଦୁଇ/ଚାରି ମିନଟ୍‌ରେ ଗୋଟିଏ ବସ୍ ପୁରୀକୁ ଯାଇଥାଏ । ସରକାରୀ ଓ ବେସରକାରୀ ବସ୍ ପ୍ରତିଦିନ ଶହ ସଂଖ୍ୟାରେ ପୁରୀ ଯାଉଛି । ଭାରତର ଯେକୌଣସି ଅଞ୍ଚଳରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଆସିଗଲେ, ପୁରୀରେ ପହଞ୍ଚିବା ପାଇଁ ଘଣ୍ଟାଏ-ଦେଢ଼ଘଣ୍ଟା ସମୟ ମାତ୍ର ଲାଗିବ ।

୪ । ପୁରୀରେ ପହଞ୍ଚିବାପରେ ରହିବାର କଥା ଚିନ୍ତା କରାଯାଏ । ଯୁଗ ଯୁଗଧରି ପୁରୀର ଯାତ୍ରୀ-ବ୍ୟବସାୟୀମାନେ ଲୋକଙ୍କର ରହିବା ଦିଗରେ ଦୃଷ୍ଟି ଦିଅନ୍ତି ଏବଂ ଶେଷରେ କିଛି ଦକ୍ଷିଣା ନିଅନ୍ତି । ତା' ଛଡ଼ା, ପୁରୀରେ ଅନେକ ଧର୍ମଶାଳା ରହିଛି, ଯେପରିକି 'ବଳୋ' ଧର୍ମଶାଳା (ଲୋକେ କହନ୍ତି ବାଗ୍‌ଲ ଧର୍ମଶାଳା), ଦୁଦୁବାଲି ଧର୍ମଶାଳା, ଗୋଏଙ୍କା ଧର୍ମଶାଳା, ବାଗାରିଆ ଧର୍ମଶାଳା ପ୍ରଭୃତି । କାର୍ତ୍ତିକ ମାସରେ ହବିଷ୍ୟ କରୁଥିବା ବିଧବାମାନେ ରହିବା ପାଇଁ ବହୁସଂଖ୍ୟକ ଘର ରହିଛି । ସର୍ବୋପରି, ବର୍ତ୍ତମାନ ବଡ଼ଦାଣ୍ଡରେ, ସମୁଦ୍ର କୂଳେ କୂଳେ ଏବଂ ଗଳି-କନ୍ଦିରେ 'lodging house' (ଲଜିଂ) ରହିଅଛି । ବର୍ତ୍ତେକୁ କୋଡ଼ିଏ-ତିରିଶ ଟଙ୍କାରୁ ଷାଠିଏ ଟଙ୍କା ପର୍ଯ୍ୟନ୍ତ ଦୈନିକ ଭଡ଼ା ଦେଇ ସେଥିରେ ଯାତ୍ରୀମାନେ ରହନ୍ତି । ଏହାଛଡ଼ା ତ ଆଧୁନିକ ଧରଣର ସୁଖପ୍ରଦ, ପ୍ରାୟ ତିରିଶ ଚାଳିଶ ଗୋଟି ଲଜିଂ ବା ହୋଟେଲ ରହିଛି । ସେଠାରେ ଲଜିଂ ଭଡ଼ା, ସାଧାରଣ ଲଜିଂ ତୁଳନାରେ ଖୁବ୍ ବେଶି । ସାରକଥା, ଯାତ୍ରୀମାନେ ନିଜର ପଇସାର ବଳକୁ ଦେଖି 'ଲଜିଂ ହାଉସ୍' ଠିକ୍ କରିବା ଉଚିତ ।

୫ । ପୁରୀର ବଡ଼ଦାଣ୍ଡ ଖାଲି ନାଁରେ ବଡ଼ଦାଣ୍ଡ ନୁହେଁ । ଅତି ପତଳା ଓ ଦୁର୍ବଳ ଲୋକକୁ ମଧ୍ୟ 'ଭୀମସେନ' ନାମ ଦିଆଯାଇଥାଏ । କିନ୍ତୁ ବଡ଼ଦାଣ୍ଡର ନାମ ସେପରି ନୁହେଁ । ପ୍ରକୃତରେ ଭାରତର ପ୍ରାଚୀନ ସହରମାନଙ୍କ ମଧ୍ୟରେ ଦାଣ୍ଡର ଚଉଡ଼ା ଦୃଷ୍ଟିରୁ ପୁରୀ ହେଉଛି ଓଡ଼ିଶାର ଗର୍ବ । କଲିକତା, ବମ୍ବେ ପ୍ରଭୃତି ସହରରୁ ଯେଉଁମାନେ ଆସନ୍ତି, ଦେଢ଼-ମାଇଲ ଲମ୍ବାର ପୁରୀର ବଡ଼ଦାଣ୍ଡ ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି ।

୬ । ଆମେ ଯେଉଁ ସହରକୁ 'ପୁରୀ' ସହର ବୋଲି କହୁଛୁ, ପ୍ରାଚୀନ କାଳରେ ତାହାର ନାମ ଥିଲା 'ପୁରୁଷୋତ୍ତମ ପୁରୀ' । ହୁଏତ

'ପୁରୁଷୋତ୍ତମ' ଶବ୍ଦଟା ଲୋକମୁଖରେ 'ପୁରୀଆ' ହୋଇ ପୁଣିଆରୁ 'ପୁରୀ' ହୋଇଯାଇଛି । କିନ୍ତୁ ଏହି ମତ ଅପେକ୍ଷା ଆଉ ଗୋଟିଏ ମତ ଅଧିକ ଯୁକ୍ତିଯୁକ୍ତ ମନେହୁଏ । ଏହାର ନାମ ଥିଲା ପୁରୁଷୋତ୍ତମ ପୁରୀ ଅଥବା ଜଗନ୍ନାଥ ପୁରୀ । 'ପୁରୀ' ଶବ୍ଦର ଅର୍ଥ ନଗରୀ ଅଥବା ଖୁବ୍ ବଡ଼ ସହର । କାଳକ୍ରମେ, ଲୋକମୁଖରେ ପୁରୁଷୋତ୍ତମ ଶବ୍ଦ କଟିଗଲା ଏବଂ ଲୋକେ କେବଳ 'ପୁରୀ' ବୋଲି କହିଲେ । ଏହାର ଇଂରାଜୀ ବନାନ **'Puri'** ଲେଖାଯାଉଥିବାରୁ, ଓଡ଼ିଆରେ ଏହା 'ପୁରି' ହେବ ବୋଲି ଅନେକ ଲୋକ ଭାବନ୍ତି । କିନ୍ତୁ ଏକଥା ଠିକ୍ ନୁହେଁ । ଏହା ହେବ ପୁରୀ **(Puree)** ।

୭ । ପୁରୀର ଅନେକଗୁଡ଼ିଏ ନାମ ଅଛି । ଯଥା—ନୀଳାଦ୍ରି (ନୀଳ+ଅଦ୍ରି), ନୀଳଗିରି (ନୀଳ+ଗିରି), ନୀଳଶୈଳ (ନୀଳ+ଶୈଳ) । ଜାଣିବାର କଥା 'ନୀଳ' ଶବ୍ଦ ନେଳିଆ ରଙ୍ଗକୁ ବୁଝାଏ । ଅଦ୍ରି, ଗିରି ଓ ଶୈଳ, ଏ ତିନୋଟିଯାକ ଶବ୍ଦର ଅର୍ଥ ହେଉଛି 'ପାହାଡ଼', ପର୍ବତ । ତେଣୁ ଏହି ତିନୋଟିଯାକ ଶବ୍ଦର ଅର୍ଥ ହେଲା, ନେଳିଆ ରଙ୍ଗର ପାହାଡ଼ । ଶହ ଶହ ବର୍ଷ ତଳେ ସେଠାରେ ଗୋଟିଏ ପାହାଡ଼ ଥିଲା, ଯାହାକି ସବୁବେଳେ ବୃକ୍ଷଲତାରେ ପୂର୍ଣ୍ଣଥିଲା । ଦୂରରୁ ନେଳିଆ ଦେଖାଯାଉଥିବାରୁ, ତାକୁ ତୁଏତ ନୀଳାଦ୍ରି, ନୀଳଗିରି ବା ନୀଳଶୈଳ କୁହାଯାଉଥିଲା ।

୮ । ଏହାଛଡ଼ା ପୁରୀର ଆହୁରି କେତେଗୁଡ଼ିଏ ନାମ ଅଛି । ଯଥା (୧) ଶଙ୍ଖକ୍ଷେତ୍ର, (୨) ଯମନିକ ତୀର୍ଥ, (୩) ଉଚ୍ଛିଷ୍ଟ କ୍ଷେତ୍ର, (୪) ଉଡ୍ଡୀୟାନ ପୀଠ, (୫) ଶ୍ରୀକ୍ଷେତ୍ର, (୬) ମର୍ତ୍ତ୍ୟ ବୈକୁଣ୍ଠ ଇତ୍ୟାଦି ।

ଭକ୍ତମାନେ ବିଶ୍ୱାସ କରନ୍ତି ଯେ, ଏହି ନାମଗୁଡ଼ିକ ଉଚ୍ଚାରଣ କଲେ ମଧ୍ୟ ପୁଣ୍ୟଲାଭ ହୁଏ ।

୯ । ପ୍ରାଚୀନ କାଳରେ ଆଧୁନିକ ଓଡ଼ିଶାର ପୂର୍ବାଞ୍ଚଳର କେତେକ ସ୍ଥାନକୁ ନେଇ ଚାରୋଟି କ୍ଷେତ୍ରର କଳ୍ପନା କରାଯାଇଥିଲା । ଜଗନ୍ନାଥ ହେଉଛନ୍ତି, ସ୍ୱୟଂ ନାରାୟଣ । ସତ୍ୟ ଯୁଗରେ ବିଷ୍ଣୁ ଥିଲେ 'ନାରାୟଣ' । ତ୍ରେତାଯୁଗରେ ସେ ହେଲେ 'ରାମଚନ୍ଦ୍ର' । ଦ୍ୱାପର ଯୁଗରେ ସେ ହେଲେ 'ଶ୍ରୀକୃଷ୍ଣ' ବା କୃଷ୍ଣଚନ୍ଦ୍ର । ପୁଣି କଳିଯୁଗରେ ସେ ହେଲେ ପୁରୁଷୋତ୍ତମ ବା ଜଗନ୍ନାଥ । ବିଷ୍ଣୁ ତାଙ୍କର ଚାରିହାତରେ (୧) ଶଙ୍ଖ (୨) ଚକ୍ର, (୩) ଗଦା ଓ (୪) ପଦ୍ମ ଧରିଥିବା କଥା ପୁରାଣରେ ବର୍ଣ୍ଣିତ ଅଛି । ଏହି ଚାରୋଟିକୁ ନେଇ ଓଡ଼ିଶାର ଚାରିକ୍ଷେତ୍ରକୁ କଳ୍ପନା କରା-ଯାଇଛି । ପୁରୀ ହେଉଛି ଶଙ୍ଖକ୍ଷେତ୍ର । ପୁରୀର ଉତ୍ତର ପଟକୁ ଥିବା କୋଣାର୍କ ହେଉଛି ଅର୍କକ୍ଷେତ୍ର । ଅର୍କର ଅର୍ଥ ସୂର୍ଯ୍ୟ । ସୂର୍ଯ୍ୟ ବିମ୍ବର ଆକାର ହେଉଛି ଚକ୍ରପରି । ତେଣୁ ସୂର୍ଯ୍ୟ ଦେବତାଙ୍କର ପ୍ରସିଦ୍ଧ ପୀଠ କୋଣାର୍କ ପ୍ରକୃତରେ ଅର୍କକ୍ଷେତ୍ର । କିନ୍ତୁ ଅର୍କ ଅର୍ଥାତ୍ ସୂର୍ଯ୍ୟଙ୍କର ଆକାର ଚକ୍ରପରି ହୋଇଥିବାରୁ ଲୋକେ ତାଙ୍କୁ ଚକ୍ରକ୍ଷେତ୍ର ମଧ୍ୟ କହନ୍ତି ।

କୋଣାର୍କର ଉତ୍ତରକୁ ଅଛି ଯାଜପୁର । ସେଠାରେ ଥିବା ବିରଜାଦେବୀ ଅତି ପ୍ରାଚୀନ । ସେ ଅଞ୍ଚଳକୁ 'ଗଦ କ୍ଷେତ୍ର' ବୋଲି କୁହାଯାଇଛି । ତାପରେ 'ପଦ୍ମକ୍ଷେତ୍ର' । ପଦ୍ମକ୍ଷେତ୍ର ହେଉଛି ଭୁବନେଶ୍ୱର । ପୁରୀରୁ ଆମେ ଯଦି କୋଣାର୍କ ବାଟଦେଇ ଯାଜପୁରକୁ ଗୋଟିଏ ଗାର ଟାଣିବା ଓ ସେ ଗାରକୁ ନେଇ ଭୁବନେଶ୍ୱରବାଟେ ପୁରୀ ସହିତ ଯୋଗ କରିବା, ତାହାହେଲେ (ଉଣାଅଧିକେ) ଗୋଟିଏ କୁକୁଡ଼ା ଡିମ୍ବ ଆକାରର ଚିତ୍ର ଆମେ ପାଇପାରିବା । ତେବେ ପୁରୀ ହେଉଛି ଶଙ୍ଖକ୍ଷେତ୍ର ।

୧୦ । ପୁରୀକୁ ଯିବା ପାଇଁ ଭୁବନେଶ୍ୱରଠାରୁ ଯେଉଁ ରାସ୍ତା ପଡ଼ିଛି, ତାହାର ପୁରୁଣା ନାମ ଥିଲା 'ଜଗନ୍ନାଥ ସଡ଼କ' । ସେ ସଡ଼କ ଏବେ ଆଗପରି ଆଉ ନାହିଁ । ତେବେ ଭୁବନେଶ୍ୱରର ପୂର୍ବରେ ଥିବା ବାଳକାଟୀ ଗ୍ରାମ ପର୍ଯ୍ୟନ୍ତ ପୁରୀରୁ ଯେଉଁ ରାସ୍ତା ପଡ଼ିଛି, ଜଣାଅଧିକେ ତାହା ହେଉଛି ଜଗନ୍ନାଥ ସଡ଼କ । ବର୍ଷରେ ଗୋଟାଏ ଦିନ ସେ ରାସ୍ତାକୁ ପୂଜା କରାଯାଏ । ରାସ୍ତା କଡ଼ରେ ଥିବା ଗାଁ ଲୋକମାନେ ଆସି ଫୁଲ ଚନ୍ଦନ ଓ ଧୂପଦୀପ ଦେଇ ରାସ୍ତାକୁ ପୂଜା କରନ୍ତି । କାରଣ, ରାସ୍ତାଟି ବାହାରିଛି ଜଗନ୍ନାଥ ମନ୍ଦିର ପାଖରୁ । ଏପରିକି, ବାଇଶ ପାହାଚର ତଳ ପାହାଚରୁ ବାହାରିଛି । ଏଣୁ ବାଇଶପାହାଚ ଯେପରି ପବିତ୍ର, ପ୍ରାଚୀନ ଭାରତର ଏହି ରାଜମାର୍ଗ ସେହିପରି ପବିତ୍ର । ଏହି ରାସ୍ତାକୁ କେହି ଅପବିତ୍ର କରିବେ ନାହିଁ, ଛେପ ପକାଇବେ ନାହିଁ, ଝାଡ଼ା ଯିବେ ନାହିଁ, ମୂତିବେ ନାହିଁ ଏହାହିଁ ହେଉଛି ରାସ୍ତାକୁ ପୂଜାକରିବାର ଅସଲ ଉଦ୍ଦେଶ୍ୟ । ଭାରତବର୍ଷରେ ରାସ୍ତା ସଫା ରଖିବା ପାଇଁ ଏଭଳି ଏକ ବିରାଟ ଆଦର୍ଶ ଆଉ କେଉଁଠାରେ ଅଛି କି ନାହିଁ, ସେ ସମ୍ପର୍କରେ ମଧ୍ୟ ଗବେଷଣା ଆବଶ୍ୟକ ।

୧୧ । ପୁରୀ ସହରରେ ପ୍ରବେଶ କରିବା ପୂର୍ବରୁ ଗୋଟିଏ ପୋଲ ପାର ହେବାକୁ ହୁଏ, ତାହାର ନାମ ଅଠରନଳା ପୋଲ । କିନ୍ତୁ ପ୍ରକୃତରେ ତହିଁରେ ଊଣେଇଶିଟି ନଳା ଅଛି ।

୧୨ । ଆଗେ ସେଠାରେ ଗୋଟାଏ ନଦୀ ଥିଲା । ସେ ନଦୀ ଏବେ ମରିଯାଇଛି । ସେ ନଦୀ ଯେତେବେଳେ ସମୁଦ୍ର ସଙ୍ଗେ ମିଶୁଥିଲା, ବଡ଼ଦାଣ୍ଡ ଦୁଇଖଣ୍ଡ ହୋଇ ରହିଥିଲା । ରଥଯାତ୍ରା ପାଇଁ ସେତେବେଳେ ଛଅଟି ରଥ ଦରକାର ହେଉଥିଲା । ମନ୍ଦିର ପାଖରୁ ତିନି ଦେବତା ତିନି ରଥରେ ନଈ ପର୍ଯ୍ୟନ୍ତ ଯାଆନ୍ତି । ତାପରେ ନଈ ପାର ହୁଅନ୍ତି । ଆରପଟକୁ ଗଲାପରେ

ପୁଣି ଅନ୍ୟ ତିନୋଟି ରଥରେ ବସି ଗୁଣ୍ଡିଚା ଘରକୁ ଯାଆନ୍ତି । ବଡ଼ ଦେଉଳଠାରୁ ଗୁଣ୍ଡିଚାଘର ଯେତେଦୂର, ମୋଟାମୋଟି ତା'ର ଅଧା ରାସ୍ତାରେ ନରୀହାସ ବଡ଼ବାଣ୍ଡ ବୋଲାଯାଇଥାଏ । ସେଥିପାଇଁ ଅର୍ଦ୍ଧ-ପଥରେ ଆସନ ପକାଇ ଜଣେ ଦେବୀ ଜଗନ୍ନାଥଙ୍କ ବାଟକୁ ଜଗିରହିଥିଲେ । ଅର୍ଦ୍ଧପଥରେ ଆସନ ପକାଇ ସେ ଦେବୀ ବସିରହିଥିବାରୁ,ତାଙ୍କୁ ଅର୍ଦ୍ଧାସନୀ ଦେବୀ କୁହାଯାଉଥିବା କଥା ଅନୁମାନ କରାଯାଏ । କିନ୍ତୁ ଅର୍ଦ୍ଧାସନୀ ଦେବୀଙ୍କ ନାମକୁ କେଏ କେଏ ଅନ୍ୟ ଭାବରେ ଗ୍ରହଣ କରନ୍ତି । (ଯଥା, ଅର୍ଦ୍ଧାଶନୀ ଦେବୀ) ।

ପୁରୀର ବଡ଼ଦେଉଳ ସମ୍ପର୍କରେ ଅନେକ କଥା ଏ ପୁସ୍ତକରେ କୁହାଯାଇଛି । ତେଣୁ, ଏଠାରେ ଜଗନ୍ନାଥଙ୍କ ପ୍ରଭାବ ଓ ପ୍ରତିଷ୍ଠା ଯେତ ଅଳ୍ପ କେତୋଟି କଥା କୁହାଯାଉଛି ।

୧୩ । କିମ୍ବଦନ୍ତୀ କହେ, ଅତି ପ୍ରାଚୀନକାଳରେ ଜଣେ ଶବର ନୀଳଗିରିର ଗୋଟିଏ ଗୁମ୍ଫାରେ ଯେଉଁ ମୂର୍ତ୍ତିକୁ ପୂଜା କରୁଥିଲା, ସେହି ମୂର୍ତ୍ତି ବା ଦେବତାଙ୍କର ନାମ ଥିଲା ନୀଳମାଧବ । ଶବରର ନାମ ଥିଲା ବିଶ୍ବାବସୁ ।

୧୪ । 'ନୀଳମାଧବ' ବୋଲନ୍ତେ ଗୋଟାଏ ମୂର୍ତ୍ତି ବୋଲି ସମସ୍ତେ ବୁଝନ୍ତି । କିନ୍ତୁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ତାହା ଠିକ୍ ନୁହେ । 'ନୀଳମାଧବ' ଶବ୍ଦଟିକୁ ଟିକିଏ ଖୋଲିଦେଲେ, ତାହା ଦେହରୁ ତିନୋଟି ଶବ୍ଦ ବାହାରେ । ଯଥା –(୧) ନୀଳ (୨) ମା ଓ (୩) ଧବ । ପୁରୀ ବଡ଼ଦେଉଳରେ ରତ୍ନବେଦୀ ଉପରେ ଏହି ତିନିହେଁ ହିଁ ଏବେ ବସୁଛନ୍ତି । ସଂସ୍କୃତରେ ନୀଳର ଅର୍ଥ କଳା (କୃଷ୍ଣ) । ରତ୍ନବେଦୀ ଉପରେ ଡାହାଣ ପଟକୁ ବସିଛନ୍ତି ନୀଳରଙ୍ଗର ଜଗନ୍ନାଥ । ତାଙ୍କ ପାଖକୁ ଅଛନ୍ତି ମା' । ମା'ର

ଅର୍ଥ ଲକ୍ଷ୍ମୀ ଏବଂ ଲକ୍ଷ୍ମୀ ହେଉଛନ୍ତି ସୌନ୍ଦର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ । ତେଣୁ ମା' ଶବ୍ଦ ପରମାସୁନ୍ଦରୀ ନାରୀମୂର୍ତ୍ତି ସୁଭଦ୍ରାଙ୍କୁ ବୁଝାଉଛି । ତାଙ୍କ ପାଖକୁ ଅଛନ୍ତି 'ଧବ' । ଧବ ଶବ୍ଦ, ଧବଳ ଶବ୍ଦର ଅର୍ଥ ପ୍ରକାଶ କରେ । ସଂସ୍କୃତ ପଣ୍ଡିତମାନେ କହିଛନ୍ତି—"ନାମୈକ ଦେଶ ଗ୍ରହଣେ ନାମ ଗ୍ରହଣମ୍" । ଅର୍ଥାତ୍ ଗୋଟିଏ ନାମର ସବୁ ଅକ୍ଷର ନ କହି, କେତୋଟି ଅକ୍ଷର କହିଲେ ମଧ୍ୟ ନାମରେ ଥିବା ଅକ୍ଷରଗୁଡ଼ିକୁ ବୁଝିବାକୁ ହେବ । ଜଗନ୍ନାଥଙ୍କୁ ଜଗା, ମହାଦେବଙ୍କୁ ଦେବ, ରାମଚନ୍ଦ୍ରଙ୍କୁ ରାମ, ଚଣ୍ଡପାଣିଙ୍କୁ ଚଣ୍ଡ, ମାଧବଙ୍କୁ ମାଧ କୁହାଗଲା ପରି ଧବଳ ଶବ୍ଦକୁ 'ଧବ' କୁହାଯାଇଛି । ତେଣୁ ଧଳାରଙ୍ଗର ବଳଭଦ୍ର ଏହାଦ୍ୱାରା ବୁଝାଯାଉଛନ୍ତି ।

୧୫ । ରତ୍ନବେଦୀ ଉପରେ ଏହି ତିନିହେଁ ତ ଅଛନ୍ତି, ପୁଣି ଜଗନ୍ନାଥଙ୍କ ବାମପଟକୁ ସୁଦର୍ଶନ ମଧ୍ୟ ଅଛନ୍ତି । ସୁଦର୍ଶନଙ୍କୁ ମିଶାଇ ବଡ଼-ଦେଉଳର ଏହାଙ୍କୁ କୁହାଯାଏ 'ଚତୁର୍ଦ୍ଧାମୂର୍ତ୍ତି' । ସାରକଥା, ଏକମାତ୍ର ସର୍ବବ୍ୟାପକ, ସର୍ବନିୟନ୍ତା ଏବଂ ସର୍ବଶକ୍ତିମାନ୍ ଭଗବାନ ଚାରିମୂର୍ତ୍ତିରେ ଆତ୍ମପ୍ରକାଶ କରିଛନ୍ତି । ଏମାନେ ଚାରିବେଦର ପ୍ରତୀକ ।

୧୬ । ଦେହର ବିଭିନ୍ନ ଅଙ୍ଗ ତୁଳନାରେ ମୁଣ୍ଡଟି ଯେପରି ପ୍ରଧାନ (କାରଣ ଆଖି, କାନ, ନାକ ଓ ପାଟି ମୁଣ୍ଡରେ ହିଁ ରହିଅଛି) ସେହିପରି, ଚତୁର୍ଦ୍ଧାମୂର୍ତ୍ତି ଭିତରେ ମୁଖ୍ୟ ହେଉଛନ୍ତି ଜଗନ୍ନାଥ ।

୧୭ । ଏହି ଚାରିମୂର୍ତ୍ତିଙ୍କର ରଙ୍ଗ ହେଉଛି ଚାରିପ୍ରକାର, ଯଥା—ଜଗନ୍ନାଥଙ୍କ ରଙ୍ଗ ନୀଳ (କୃଷ୍ଣ) । ସୁଭଦ୍ରାଙ୍କ ରଙ୍ଗ ହଳଦିଆ, ବଳଭଦ୍ରଙ୍କ ରଙ୍ଗ ଧଳା ଏବଂ ସୁଦର୍ଶନଙ୍କ ରଙ୍ଗ ହେଉଛି ରକ୍ତବର୍ଣ୍ଣ (ନାଲି) ।

ଏହିମାନେ କି ଥିଲେ ତ୍ରେତାଯୁଗରେ ଦଶରଥଙ୍କର ରାମପୁଅ । ଓଡ଼ିଶାରେ ଜନ୍ମ ହୋଇଥିବା ଭାରତର ମହାକବି ଉପେନ୍ଦ୍ର ଭଞ୍ଜ ତାଙ୍କର ବୈଦେହୀଶବିଳାସରେ ରାମଭାଇଙ୍କୁ ଚାରିରଙ୍ଗର ଚାରିଗୋଟି ଶକ୍ତିଶାଳୀ ଗ୍ରହରୂପେ ବର୍ଣ୍ଣନା କରିଛନ୍ତି, ଯଥା:—

"ବିଧୁ ଗୁରୁ ଭାର୍ଗବ ଅଙ୍ଗାରଜହତ
ବନଶ୍ୟାମ ଧାରୀ ରବି ନବଉଡ଼ ଧ୍ୱାନ୍ତ ।"
(ବୈ: ବିଳାସ-୫।୫୪)

ବର୍ତ୍ତମାନ ସମଗ୍ର ପୃଥିବୀପୃଷ୍ଠରେ ଯେଉଁସବୁ କୋଟି କୋଟି ଲୋକ ବାସ କରୁଛନ୍ତି, ସେମାନଙ୍କ ଦେହର ରଙ୍ଗ ଚାରିପ୍ରକାର, ଯଥା— କଳା ରଙ୍ଗ, ହଳଦିଆ ରଙ୍ଗ, ଧଳାରଙ୍ଗ (ଗୋରା) ଏବଂ ନାଲି ରଙ୍ଗ । ଜଗନ୍ନାଥଙ୍କୁ ସମଗ୍ର ମାନବଜାତିର ଦେବତା ରୂପେ ପରିଚିତ କରାଇବା ପାଇଁ ଉପର କଥିତ ଚାରିରଙ୍ଗରେ ବିଗ୍ରହମାନଙ୍କୁ ରଚିତ କରାଯାଇଛି । ତେଣୁ ସମଗ୍ର ବିଶ୍ୱରେ ଏଭଳି ଉଦାର ଏବଂ ମହାନ୍ ଉପାସନାପୀଠ ଆଉ ନାହିଁ କହିଲେ ଚଳେ ।

୧୮ । କିମ୍ବଦନ୍ତୀ କହେ ଯେ, ଅବନ୍ତୀ ରାଜ୍ୟର ରାଜା ନୀଳ-ମାଧବଙ୍କ ଖବର ପାଇ, ତାଙ୍କୁ ଠାବ କରିବାକୁ ତାଙ୍କର କୁଳପୁରୋହିତଙ୍କୁ (ବା ତାଙ୍କ ଭାଇ ବିଦ୍ୟାପତିଙ୍କୁ) ପଠାଇଥିଲେ । କିନ୍ତୁ ବିଶ୍ୱାବସୁ ଶବର 'ନୀଳମାଧବ'ଙ୍କୁ ଦେଖାଇଦେଲା ନାହିଁ । ଉପାୟ ନ ଦେଖି ବ୍ରାହ୍ମଣ ବିଦ୍ୟାପତି ବିଶ୍ୱ ବସୁର କନ୍ୟା ଲଳିତାକୁ ବିବାହ କରି, କୌଶଳକ୍ରମେ ନୀଳମାଧବଙ୍କୁ ଦେଖିପାରିଲେ । ତାଙ୍କଠାରୁ ସବୁ କଥା ଶୁଣି ନିଜେ ଅବନ୍ତୀ ରାଜା ଇନ୍ଦ୍ରଦ୍ୟୁମ୍ନ ଉତ୍କଳକୁ ଆସି, ନୀଳଗିରିକୁ ଗଲାବେଳକୁ ଦେଖିଲେ ଯେ, ନୀଳମାଧବ କୁଆଡ଼େ ଉଭେଇ ଯାଇଛନ୍ତି ।

୧୯ । ବିଷ୍ଣୁଭକ୍ତ ଏହି ରାଜା ବିଷ୍ଣୁଙ୍କୁ ପ୍ରାର୍ଥନା କରିବାରୁ ସ୍ୱପ୍ନରେ ଆଦେଶ ହେଲା, "ତୁ ଯାଇ କାଲି ସମୁଦ୍ରକୂଳରେ (ଯେଉଁଠାରେ ଏବେ ଚକ୍ରତୀର୍ଥ ରହିଅଛି) ଠିଆ ହୋଇ ଦେଖିବୁ ଯେ, ଗୋଟିଏ ବଡ଼ କାଠ ଭାସି ଆସୁଛି । ସେ କାଠ ଦେହରୁ ମୋର ମୂର୍ତ୍ତି ତିଆରି କରି ପୂଜା କରିବୁ ।" ରାଜା ସେପରି କଲେ ଏବଂ ବିଷ୍ଣୁଙ୍କର ମୂର୍ତ୍ତି ତିଆରି କରିବାକୁ ବଢ଼େଇମାନଙ୍କୁ ଡାକିଲେ । ପ୍ରତ୍ୟେକ ବଢ଼େଇ କହିଲା, "ମୁଁ ତ ବିଷ୍ଣୁଙ୍କୁ ଦେଖିନାହିଁ, ତେବେ ତାଙ୍କ ମୂର୍ତ୍ତି ତିଆରି କରିବି କିପରି ?" ସବୁଆଡ଼େ ଭାଳେଣି ପଡ଼ିଗଲା । ହଠାତ୍ ଜଣେ ବଢ଼େଇ ଆସି କହିଲା, "ମୁଁ ବିଷ୍ଣୁଙ୍କୁ ଦେଖିଛି, ତାଙ୍କ ମୂର୍ତ୍ତି ତିଆରି କରିଦେବି । ଗୋଟିଏ ଘରେ କବାଟ ଦେଇ ମୂର୍ତ୍ତି ତିଆରି କରିବି । କିନ୍ତୁ ଏକୋଇଶ ଦିନ ପର୍ଯ୍ୟନ୍ତ ସେ ଘରର ଝରକା କବାଟ କେହି ଖୋଲିବ ନାହିଁ ।" ତାହା ହିଁ କରାଗଲା । କାମ ଚାଲିଲା । ରାଜାଙ୍କ ରାଣୀ ଥିଲେ ବଡ଼ ଦୟାବତୀ । ସେ କହିଲେ, "କାଳେ ଛୁଞ୍ଚ ହୋଇ ବଢ଼େଇଜଣଙ୍କ ଘର ଭିତରେ ମରିଯିବ, ତେଣୁ କଣ୍ଟ (ନିର୍ଦ୍ଦିଷ୍ଟ) ସମୟ ପୂରିବା ଆଗରୁ କବାଟ ଖୋଲି ଦେଖାଯାଉ ।" ତାହାହିଁ ହେଲା । ଘର ଭିତରକୁ ସମସ୍ତେ ଗଲାବେଳକୁ ଦେଖିଲେ, ବଢ଼େଇ କୁଆଡ଼େ ଉଭେଇ ଯାଇଛି ଏବଂ ତିନୋଟି ମୂର୍ତ୍ତି ଅପୂର୍ଣ୍ଣ ଅବସ୍ଥାରେ ରହିଛନ୍ତି ।

୨୦ । ଉପାୟ ନ ଦେଖି ରାଜା ଗୋଟିଏ ବେଦୀ ଓ ଘୋଡ଼ିଆ ମନ୍ଦିର ନିର୍ମାଣ କରି ଅପୂର୍ଣ୍ଣ ତିନୋଟି ମୂର୍ତ୍ତିଙ୍କୁ ପୂଜା କଲେ । ଏବେ ଯେଉଁଠାରେ ଗୁଣ୍ଡିଚା ଘର ଠିଆ ହୋଇଛି, ରାଜା ଇନ୍ଦ୍ରଦ୍ୟୁମ୍ନ ପ୍ରଥମେ ସେଠାରେ ବେଦୀ ନିର୍ମାଣ କରି ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର ଏହି ତିନି ଦେବତାଙ୍କୁ ପୂଜା କରିଥିଲେ । ଅନ୍ୟ ଭାବରେ କହିଲେ, ଏହି ତିନିମୂର୍ତ୍ତି ସେଠାରେ ସର୍ବପ୍ରଥମେ ଦେବତା ରୂପେ ପୂଜା ପାଇଥିଲେ । ସେଥିପାଇଁ

ଗୁଣ୍ଡିଚାଘରକୁ ଜଗନ୍ନାଥଙ୍କର ଜନ୍ମସ୍ଥାନ କୁହାଯାଏ । ପ୍ରତିବର୍ଷ ରଥଯାତ୍ରା ବେଳେ କେବଳ ନଅଦିନ ପାଇଁ (ଯିବାଆସିବା ଦୁଇଦିନକୁ ମିଶାଇ) ଜଗନ୍ନାଥ ନିଜର ଜନ୍ମସ୍ଥାନକୁ ଯାଆନ୍ତି ।

ତତ୍ତ୍ୱ ଦୃଷ୍ଟିରୁ ଏହାର ଅର୍ଥ ଏଭଳି ଭାବରେ ବୁଝାଇ ଦିଆଯାଇ-ପାରେ —

ଜଗନ୍ନାଥ ଧର୍ମ ମାନବସମାଜକୁ କହୁଛି—"ହେ ମନୁଷ୍ୟ (ସ୍ତ୍ରୀ ଓ ପୁରୁଷ) ! ତୁମେ ଜନ୍ମ ହୋଇ ଯୋଗ୍ୟତା ଅର୍ଜନ କର ଏବଂ ପୃଥିବୀର ଯେକୌଣସି ସ୍ଥାନରେ କାର୍ଯ୍ୟ କର । କିନ୍ତୁ ବର୍ଷକୁ ଅନ୍ତତଃ ଥରେ (ପୂରା ଏକ ସପ୍ତାହ ପାଇଁ) ନିଜର ଜନ୍ମସ୍ଥାନକୁ ଆସିବାକୁ ଭୁଲିବ ନାହିଁ । ଜନ୍ମଭୂମି ହେଉଛି ସ୍ୱର୍ଗଠାରୁ ଅଧିକ । ଏହି ସ୍ୱଦେଶପ୍ରୀତି ରଥଯାତ୍ରା ମାଧ୍ୟମରେ ବିଶେଷ ଭାବରେ ଫୁଟିଉଠିଛି ।

୨୧ । ତାହାପରେ ଇନ୍ଦ୍ରଦ୍ୟୁମ୍ନ ଗୋଟିଏ ବଡ଼ ଧରଣର ଦେଉଳ ତିଆରି କରିବାକୁ ଇଚ୍ଛା କଲେ । ଏବେ ଯେଉଁଠାରେ ବଡ଼ଦେଉଳ ଠିଆ ହୋଇଛି, ସେଠାରେ ଗୋଟିଏ ଛୋଟିଆ ପାହାଡ଼ ଥିଲା । ଆନ୍ଧ୍ରପ୍ରଦେଶର ଭାଇଜାଗ୍ (ବିଶାଖାପାଟଣା)ଠାରୁ ଗଞ୍ଜାମଜିଲ୍ଲାର ରମ୍ଭା ପର୍ଯ୍ୟନ୍ତ ସମୁଦ୍ର କୂଳେ କୂଳେ ଅନେକ ଛୋଟ ଛୋଟ ପାହାଡ଼ ଏବେ ମଧ୍ୟ ଠିଆ ହୋଇଛି । ଭୁବନେଶ୍ୱର ନିକଟରେ ଉଦୟଗିରି ଏବଂ ଧଉଳିପାହାଡ଼ ମଧ୍ୟ ଠିଆ ହୋଇଛି । ବୃକ୍ଷଲତା ପୂର୍ଣ୍ଣ ହୋଇଥିବାରୁ ଶ୍ରୀକ୍ଷେତ୍ରର ସେହି ଛୋଟିଆ ପାହାଡ଼ଟି ନେଳିଆ ଦେଖାଯାଉଥିଲା; ହୁଏତ, ପାହାଡ଼ର ଉଚ୍ଚତା ଥିଲା ଶହେ, ଦେଢ଼ଶ ଫୁଟ । ଇନ୍ଦ୍ରଦ୍ୟୁମ୍ନ ପାହାଡ଼ର ଉପର ଅଂଶକୁ କଟାଇ ଦେଲେ । ତତ୍ପରେ ରହିଲା ପ୍ରାୟ କୋଡ଼ିଏ ତିରିଶଫୁଟ ଉଚ୍ଚ । ପାହାଡ଼ର ଉପର ଅଂଶ କଟାଯିବାରୁ ଗୋଟାଏ ବିଶାଳ ବେଦୀ ବାହାରି ପଡ଼ିଲା । ସେହି

କଡ଼ର ଗଡ଼ାଣିଆ ଅଂଶ ଛେଦ ଦେଇ ଇନ୍ଦ୍ରଦ୍ୟୁମ୍ନ ତାର ଉପରେ ଏକ ହଜାର ହାତ ଉଚ୍ଚର ବିରାଟ ମନ୍ଦିର ନିର୍ମାଣ କଲେ । 'ମହାବେଦୀ' ରୂପେ ପରିଚିତ ଥିବା ଆଜିର ଗୁଣ୍ଡିଚାଘରର ଅଞ୍ଚଳରୁ ଭିନମୂର୍ତ୍ତିଙ୍କୁ ସେଠି ଆଣି ଏହି ନୂତନ, ବିଶାଳ ଏବଂ ଉତ୍ତୁଙ୍ଗ ମନ୍ଦିରରେ ସ୍ଥାପନା କଲେ । ତାପରେ ପୂଜାପୂଜି ଚାଲିଲା । ଏଠାରେ କିମ୍ବଦନ୍ତୀର ବିବରଣୀ ଶେଷ ହେଲା ।

୨୨ । ତା'ପରେ ଇତିହାସର କଥା । ଇନ୍ଦ୍ରଦ୍ୟୁମ୍ନଙ୍କର ମନ୍ଦିର କ୍ରମେ ଜୀର୍ଣ୍ଣ ହୋଇଗଲା । ତା'ପରେ ସୋମବଂଶୀ ବା କେଶରୀ ବଂଶର ରାଜା ଯଯାତିକେଶରୀ ଜଗନ୍ନାଥଙ୍କ ପାଇଁ ଶହେ ହାତରୁ କମ୍ ଉଚ୍ଚଥିବା ଗୋଟିଏ ମନ୍ଦିର ନିର୍ମାଣ କଲେ । ସେତେବେଳକୁ ଆଜି ଯେଉଁଠାରେ ବଡ଼ ଦେଉଳର ନାଟମନ୍ଦିର (ଗରୁଡ଼ ଖମ୍ବଥିବା ସ୍ଥାନ) ଏବଂ ଭୋଗମଣ୍ଡପ ରହିଅଛି, ସେ ସ୍ଥାନ ଖାଲି ପଡ଼ିଥିଲା ।

୨୩ । ତାହାର ପ୍ରାୟ ଦେଢ଼ଶହ ବର୍ଷ ପରେ ସେ ଦେଉଳ ଦୁର୍ବଳ ହୋଇଯିବାରୁ ଗଙ୍ଗ ବଂଶର ପ୍ରତିଷ୍ଠାତା ଓ ପ୍ରଥମ ରାଜା ଚୋଡ଼ଗଙ୍ଗ-ଦେବ ସେହି ସ୍ଥାନରେ ଆଜି ଗୋଟିଏ ବିରାଟ ମନ୍ଦିର ନିର୍ମାଣ କଲେ । ଆନୁମାନିକ ଏଗାର ଶହ ପଚିଶ ପରେ ଚୋଡ଼ଗଙ୍ଗଦେବ ମନ୍ଦିର ତୋଳାଇ ଥିଲେ । ଏବେ ଆମେ ଯେଉଁ ମନ୍ଦିର ବା ବଡ଼ ଦେଉଳ ଦେଖୁଅଛୁ, ତାହା ଚୋଡ଼ଗଙ୍ଗ ଦେବଙ୍କର କୀର୍ତ୍ତି ।

୨୪ । କିନ୍ତୁ, ଏଡ଼େ ବଡ଼ ଦେଉଳ ଗୋଟିଏ ପୁରୁଷ ଭିତରେ ପୂର୍ଣ୍ଣତା ଲାଭ କରି ନଥିବ । ବହୁ ଯୁକ୍ତି ଦେଖାଇ ଅନେକ ଐତିହାସିକ କହିଅଛନ୍ତି ଯେ, ଆଜିର ପୁରୀ ଦେଉଳ ଦ୍ୱିତୀୟ ଅନଙ୍ଗ ଭୀମ ଦେବଙ୍କ

ସମୟରେ ପ୍ରସ୍ତୁତ ହୋଇଥିବ । ଖ୍ରୀଷ୍ଟୀୟ ୧୨୦୦ ଆଗରୁ ବା ଠିକଏ ପରେ ଆଜର ଦେଉଳ ପୂର୍ଣ୍ଣ ହୋଇଥିବ । ଏ ବିଷୟରେ ୩।୪ଟି ମତ ଅଛି ।

୨୫ । ହୁଏତ କେବଳ ବଡ଼ଦେଉଳଟି ପ୍ରଥମେ ନିର୍ମିତ ହୋଇଥିଲା ଏବଂ କିଛି କାଳପରେ ଜଗମୋହନ ତିଆରି ହୋଇଥିଲା । ମତାନ୍ତରେ, ବଡ଼ଦେଉଳ (ଅର୍ଥାତ୍ ବିମାନ ବା ଗର୍ଭଗୃହ) ଏବଂ ଜଗମୋହନ (ଅର୍ଥାତ୍ ମୁଖଶାଳା) ଏକ ସମୟରେ ତିଆରି ହୋଇଥିଲା । ପୁଣି, ପରବର୍ତ୍ତୀ ସମୟ ଭିତରୁ ନାଟମନ୍ଦିର ଓ ଭୋଗମଣ୍ଡପ ନିର୍ମାଣ କରାଯାଇଥିଲା ।

୨୬ । ନୀଳଗିରି ପାହାଡ଼ର ଉପର ଅଂଶକୁ କାଟି ବାହାର କରି ଦିଆଯିବା ପରେ ଦେଉଳ ତିଆରି କରିବା ପାଇଁ ବେଦୀ ଭଳିଆ ଯେଉଁ ସମତଳ ଅଞ୍ଚଳ ମିଳିଗଲା, ତାହାର କ୍ଷେତ୍ରଫଳ ପ୍ରାୟ ଚାରିଲକ୍ଷ କୋଡ଼ିଏ ହଜାର ବର୍ଗଫୁଟ । ବଡ଼ଦେଉଳର ଚାରିପଟେ ଯେଉଁ ପାଚେରି ଭଳି ଦେଖାଯାଉଥିବା ବିରାଟ ବେଦୀର କାନ୍ଥ ରହିଛି, ତାହାର କ୍ଷେତ୍ରଫଳ ହେଉଛି ପ୍ରାୟ ଚାରି ଲକ୍ଷ କୋଡ଼ିଏ ହଜାର ବର୍ଗଫୁଟ । ଏହାକୁ କିଏ ଭୁଲରେ 'ମେଘନାଦ-ପାଚେରି' ବୋଲି ନ ଜାଣିବା ଲୋକେ କହୁଛନ୍ତି ।

୨୭ — ପୁରୀ ଦେଉଳ ଏକ ଦୁର୍ଗ ଆକାରରେ ତିଆରି ହୋଇଛି । ବେଦୀର କଡ଼େ କଡ଼େ ଯେଉଁ ପ୍ରାୟ ଚାରିଫୁଟ ଉଚ୍ଚର ପାଚେରି ରହିଛି, ରାସ୍ତା ପତନଠାରୁ ତାହାର ଉଚ୍ଚତା ପ୍ରାୟ ବାଇଶ ଫୁଟ । କିନ୍ତୁ ଦେଉଳ ବେଢ଼ା ଚାରିପଟର ରାସ୍ତା ଅସମାନ ଭାବରେ କାଳକ୍ରମେ ଉଚ୍ଚ ହୋଇଯାଇଥିବାରୁ, ପଶ୍ଚିମ ଦ୍ୱାରପଟେ ଉଚ୍ଚତା ପ୍ରାୟ ପନ୍ଦର ଫୁଟରୁ କମ୍ ହେବ ।

୨୮ । ଜଗନ୍ନାଥ କ୍ଷେତ୍ର ବା ଶ୍ରୀକ୍ଷେତ୍ର ନବମ ଶତାବ୍ଦୀର ଆରମ୍ଭରୁ ସମଗ୍ର ଭାରତରେ ବିଶିଷ୍ଟ ତୀର୍ଥକ୍ଷେତ୍ରରେ ପରିଣତ ହୋଇଗଲା । କାରଣ,

ମହାଦେବ ଶିବଙ୍କ ଅବତାର, (ଅଳ୍ପ ବୟସର) ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଜଗନ୍ନାଥଧାମକୁ ଆସି ଶ୍ରୀବିଦ୍ୟା ଅନୁସାରେ ପୂଜାପଦ୍ଧତି ପ୍ରଚଳନ କରାଇଲେ । ହୁଏତ ସେହି ସମୟରୁ 'ଶ୍ରୀବିଦ୍ୟା'ର ପ୍ରଭାବରେ ଜଗନ୍ନାଥ-କ୍ଷେତ୍ର "ଶ୍ରୀକ୍ଷେତ୍ର" ହୋଇଗଲା ।

ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଭାରତର ଚାରିକୋଣରେ ଚାରୋଟି ମଠ ପ୍ରତିଷ୍ଠା କଲେ । କ୍ରମେ ମଠର ପ୍ରତିଷ୍ଠାର ସ୍ଥାନଗୁଡ଼ିକ ଧାମ ରୂପେ ପରିଚିତ ହେଲା । ଧାମର ସାଧାରଣ ଅର୍ଥ ହେଉଛି ସ୍ଥାନ । ଆମର ପୁରୀ ହେଉଛି ପୂର୍ବଧାମ, ହିମାଳୟର ବଦ୍ରିନାଥ (ବଦରୀନାଥ) ହେଉଛି ଉତ୍ତରଧାମ ।

ଗୁଜରାଟର ଦ୍ୱାରକା ହେଉଛି ପଶ୍ଚିମଧାମ, ତାମିଲ୍‌ନାଡ଼ୁର ଦକ୍ଷିଣ-ପୂର୍ବ କୋଣରେ ଥିବା ରାମେଶ୍ୱର ହିଁ ଦକ୍ଷିଣଧାମ । ଶଙ୍କରଙ୍କ ସମୟରୁ ଲୋକେ ପୂଣ୍ୟ ଅର୍ଜନ ପାଇଁ ଏହି ଚାରିଧାମ ବା ଚାରି ତୀର୍ଥକ୍ଷେତ୍ର ଦେଖି ଆସନ୍ତି । ଅନ୍ୟ ଭାବରେ କହିବାକୁ ଗଲେ, କେଉଁଲୋକ ଚାରିଧାମ କରେ । ଭାରତର ସବୁ ଅଞ୍ଚଳର ଧର୍ମ, ଭାଷା, ସାହିତ୍ୟ, ସାମାଜିକ ବିଧି ବିଧାନ, ବେଶଭୂଷା, ଖାଦ୍ୟପେୟ, ପୂଜାପଦ୍ଧତି ପ୍ରଭୃତି ସଂପର୍କରେ ଭଲ ଭାବରେ ଜାଣିବାକୁ ସମର୍ଥ ହୁଏ । ଶଙ୍କରାଚାର୍ଯ୍ୟ ପୁରୀର ସମୁଦ୍ରକୂଳରେ ଯେଉଁ ଗୋବର୍ଦ୍ଧନ ମଠ ପ୍ରତିଷ୍ଠା କରିଥିଲେ, ତାହା ଏପର୍ଯ୍ୟନ୍ତ ରହିଅଛି । ଏହି ମଠରେ ଯେଉଁ ବ୍ୟକ୍ତି ଶଙ୍କରାଚାର୍ଯ୍ୟ (ଅର୍ଥାତ୍ ପୀଠ-ଅଧୀଶ) ହୁଅନ୍ତି, ବଡ଼ଦେଉଳରେ ସେ ସ୍ୱତନ୍ତ୍ର ସମ୍ମାନ ଉପଭୋଗ କରନ୍ତି ।

୨୯ । ଓଡ଼ିଶାର ପ୍ରାଚୀନ ସାହିତ୍ୟରୁ ଏବଂ କିମ୍ବଦନ୍ତୀରୁ ଜଣାଯାଏ ଯେ, ରାଜା ଇନ୍ଦ୍ରଦ୍ୟୁମ୍ନ ଯେଉଁ କାଠଖଣ୍ଡଟିକୁ ସମୁଦ୍ରରୁ ଉଦ୍ଧାର କରି ମୂର୍ତ୍ତି ନିର୍ମାଣ କରାଇଥିଲେ, ତନ୍ମଧ୍ୟରୁ ଗୋଟିଏ ମୂର୍ତ୍ତିର ହୃଦୟ ପ୍ରଦେଶରେ ଶ୍ରୀକୃଷ୍ଣଙ୍କର ଅପୋଡ଼ା ହାଡ଼ ରଖାଯାଇଥିଲା । ଶ୍ରୀକୃଷ୍ଣଙ୍କ ମୃତ୍ୟୁ ଖବର

ଯାଇ, ପାଣ୍ଡବମାନେ ତାଙ୍କ ଶବକୁ ଦାହ କରିଥିଲେ । କିନ୍ତୁ କେତେକ ଅଂଶର ହାଡ଼ ଅପୋଡ଼ା ରହିଗଲା । "କଅଣ କରାଯିବ" ବୋଲି ସେମାନେ ଚିନ୍ତା କରିବାରୁ, ଆକାଶବାଣୀ ହେଲା—"ଅପୋଡ଼ା ହାଡ଼କୁ ଗଛ ଡାଳରେ ବାନ୍ଧିଦେଇ ସମୁଦ୍ରରେ ପକାଇ ଦିଅ ।" ସେହି ଡାଳ ଦକ୍ଷିଣକୁ ଯାଇ କନ୍ୟାକୁମାରୀଠାରୁ ଉତ୍ତର ମୋଡ଼ରେ ଆସି ପୁରୀ ସମୁଦ୍ରକୂଳରେ ଲାଗିଲା (ଯେଉଁଠାରେ କି, ପୂର୍ବରାତିର ସ୍ୱପ୍ନ-ଆଦେଶ ଅନୁସାରେ ରାଜା ଇନ୍ଦ୍ରଦ୍ୟୁମ୍ନ ଠିଆ ହୋଇଥିଲେ) ତେଣୁ ସେହି ହାଡ଼କୁ ଗୋଟିଏ ମୂଲ୍ୟବାନ୍ ଡବା ଭିତରେ ରଖି ଜଗନ୍ନାଥଙ୍କ ଦାରୁବିଗ୍ରହରେ (କାଠ-ମୂର୍ତ୍ତିର ଭିତରେ) ଗୋଟାଏ କୋରଡ଼ କରାଯାଇ, ତାକୁ ରଖାଯାଇଥିଲା । ତାହାହିଁ 'ଦାରୁବ୍ରହ୍ମ' । ଦାରୁର ଅର୍ଥ କାଠ । ଜଗନ୍ନାଥଙ୍କ ମୂର୍ତ୍ତି ନିମ ଦାରୁରେ ତିଆରି । ସେହି ଦାରୁମୂର୍ତ୍ତି ଦେହରେ ପରଂବ୍ରହ୍ମ ରୂପକ କୃଷ୍ଣଙ୍କ ଦେହର ଅସ୍ଥି ବା ହାଡ଼ ରଖାଯାଇଥିବାରୁ ତାଙ୍କୁ "ଦାରୁବ୍ରହ୍ମ" କୁହାଯାଏ ।

କିନ୍ତୁ ବଳଭଦ୍ର ଏବଂ ସୁଭଦ୍ରାଙ୍କ ଦେହରେ ସେଭଳି କିଛି ପଦାର୍ଥ ନଥିଲା । ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଆଜକୁ ପ୍ରାୟ ଏଗାର ଶହ ବର୍ଷ ତଳେ ନେପାଳରୁ ଦୁଇଟି ମହାମୂଲ୍ୟ ଶାଳଗ୍ରାମ ଶିଳା ଅଣାଇ ବଳଭଦ୍ର ଏବଂ ସୁଭଦ୍ରାଙ୍କ ବକ୍ଷସ୍ଥଳରେ ସ୍ଥାପନା କରିଥିଲେ । ନେପାଳର ମହାରାଜା ଏ ବିଷୟରେ ଶଙ୍କରାଚାର୍ଯ୍ୟଙ୍କୁ ସହାଯ୍ୟ କରିଥିଲେ । ସେଥିପାଇଁ, ଜଗନ୍ନାଥଙ୍କୁ ପୂଜା କଲାବେଳେ ନେପାଳ ମହାରାଜା ଉତ୍କଳ ଗଜପତିଙ୍କ ପରି କେତେକ ସ୍ୱତନ୍ତ୍ର ସୁବିଧା ଏବେ ମଧ୍ୟ ପାଉଛନ୍ତି ।

୩୦ । ଉତ୍କଳ ଗଜପତି ହେଉଛନ୍ତି ଜଗନ୍ନାଥଙ୍କର "ଆଦ୍ୟ ସେବକ"। ୧୯୭୩ରେ ରଥଯାତ୍ରା ବନ୍ଦ କରିବାକୁ ଚେଷ୍ଟା କରାଗଲେ ମଧ୍ୟ ଜଗନ୍ନାଥଙ୍କୁ ରଥ

ଉପରକୁ ଉଠାଇ ଦେଇ ନାହିଁ । ଏ ଆଶ୍ଚର୍ଯ୍ୟକର ଘଟଣା କୋଟି କୋଟି ଲୋକଙ୍କୁ ଆକାଶବାଣୀ ସାହାଯ୍ୟରେ ଶୁଣାଇ ଦିଆଯାଉଥାଏ; କିନ୍ତୁ ଅଦ୍ଭୁତ କଥା, ଗଜପତି ମହାରାଜ ତାଙ୍କ ଶ୍ରୀନହରରୁ ଉଦ୍‌ବେଗର ସହିତ ଦଉଡ଼ି ଆସି ଯେତେବେଳେ ଜଗନ୍ନାଥଙ୍କୁ ଯୋଡ଼ହସ୍ତରେ କ୍ଷମା ମାଗିଲେ । ମୁହୂର୍ତ୍ତକ ଭିତରେ ଜଗନ୍ନାଥ ରଥ ଉପରକୁ ଚାଲିଗଲେ । ଲକ୍ଷ ଲକ୍ଷ ଲୋକଙ୍କ ଉପସ୍ଥିତିରେ ଏ ଘଟଣା ଘଟିଯାଇଥିଲା ।

୩୧ । ଭାରତର ହଜାର ହଜାର ଦେବଦେବୀ ମନ୍ଦିର, ଭାରତରେ ବଞ୍ଚି ରହିଥିବା କୌଣସି ନା କୌଣସି ଧର୍ମ ସମ୍ପ୍ରଦାୟ ସଙ୍ଗେ ନିବିଡ଼ଭାବେ ସମ୍ପୃକ୍ତ । ଯେପରିକି, ଭାରତ ବିଖ୍ୟାତ "କାଶୀ ବିଶ୍ୱନାଥ-ମନ୍ଦିର" ଶୈବଧର୍ମ ସଙ୍ଗେ, କଲିକତାର କାଳୀ, ମଦୁରାଇର ମୀନାକ୍ଷୀ ଏବଂ ଗୁଆହାଟୀ (ଆସାମ)ର କାମାକ୍ଷା ମନ୍ଦିର ଶାକ୍ତଧର୍ମ ସଙ୍ଗେ ସମ୍ପୃକ୍ତ । କିନ୍ତୁ ଶତ ଶତ ପ୍ରସିଦ୍ଧ ଓ ବିଶିଷ୍ଟ ମନ୍ଦିରମାନଙ୍କ ମଧ୍ୟରେ ଓଡ଼ିଶାର ଜଗନ୍ନାଥ ମନ୍ଦିର ହେଉଛି ଏକମାତ୍ର ମନ୍ଦିର, ଯାହା କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମମତ ବା ଧର୍ମସମ୍ପ୍ରଦାୟର ବୋଲି କୁହାଯାଇ ପାରିବ ନାହିଁ । ସମଗ୍ର ଭାରତର ବିଭିନ୍ନ ଅଞ୍ଚଳରୁ ବହୁ ଧର୍ମଗୁରୁ ଚାଲି ଚାଲି ପୁରୀଧାମକୁ ଆସିଛନ୍ତି; ଯଥା ଆଚାର୍ଯ୍ୟ ଶଙ୍କର, ରାମାନୁଜ, ମଧ୍ୱ, ନିମ୍ବାର୍କ, ବଲ୍ଲଭ, ଚୈତନ୍ୟଦେବ, ଆସାମର ଶଙ୍କରଦେବ, ତୁଳସୀଦାସ, କବିର୍, ମିରାବାଈ, ରାମଦାସ, ନାନକ ଇତ୍ୟାଦି । ସମସ୍ତେ ପୁରୀକୁ ଆସିବା ପରେ ଜଗନ୍ନାଥଙ୍କର ଶରଣାପନ୍ନ ହୋଇ ତାଙ୍କର ଆଶ୍ରୟ ଲୋଡ଼ିଛନ୍ତି ସିନା, କେହିହେଲେ କହିପାରି ନାହାନ୍ତି ଯେ, "ଜଗନ୍ନାଥ ହେଉଛନ୍ତି ମୋ ସମ୍ପ୍ରଦାୟର ଦେବତା ।" ଜଗନ୍ନାଥଙ୍କର ତାତ୍ତ୍ୱିକ ଉଚ୍ଚତା ଏତେ ବେଶି ଯେ, ତାଙ୍କୁ ଆଚ୍ଛାଦିତ କରିବା ପାଇଁ କୌଣସି ଧର୍ମ ସମ୍ପ୍ରଦାୟ ରୂପକ ଲମ୍ବା ବସ୍ତ୍ର ଏ ପର୍ଯ୍ୟନ୍ତ ଭାରତରେ ପ୍ରସ୍ତୁତ ହୋଇପାରି ନାହିଁ । ଯୋଖଗାରେ

ବର୍ଷାଋତୁରେ ପାଣି ଭର୍ତ୍ତି ହେବା ଫଳରେ, ଜଳର ପତନ ଯେତେ ଯେତେ ଉପରକୁ ଉଠୁଥାଏ, ତହିଁରେ ଫୁଟିଥିବା କଇଁଫୁଲ ତାର ନାଡ଼କୁ ସେତିକି ସେତିକି ବଢ଼ାଇ ବଢ଼ାଇ ବରାବର ଜଳପତନ ଉପରେ ରହୁଥାଏ ସିନା ପାଣି ଭିତରେ ବୁଡ଼ଯାଏ ନାହିଁ । ଠିକ୍ ସେହିପରି, ଭାରତରେ ଯେତେ ଯେତେ ବଡ଼ ବଡ଼ ଧର୍ମ ସମ୍ପ୍ରଦାୟ ଜନ୍ମଲାଭ କରୁଛି, ସେତେ ସେତେ ଧର୍ମ ଜଗନ୍ନାଥ ଧର୍ମ ରୂପକ କଇଁଫୁଲ ଉପରକୁ ଉଠି ସାଂପ୍ରଦାୟିକସ୍ତର, ନିର୍ଦ୍ଦିଷ୍ଟ ଧର୍ମଧାରାଗତ—ଚେତନାର ସ୍ତର ବା ଦେଶକାଳାଶ୍ରିତ ଚେତନାର ସ୍ତର ଉପରକୁ ଉଠି ନିଜକୁ ଉଚ୍ଚରେ ରଖିପାରିଛି ।

୩୨ । ଜଗନ୍ନାଥ ଚେତନା ବା ଜଗନ୍ନାଥଧର୍ମରେ ସ୍ୱତଗୋଟି ସାଂସ୍କୃତିକ ଚେତନା ବଡ଼ ନିବିଡ଼ ଭାବରେ ସଶ୍ଳିଷ୍ଟ ହୋଇ ରହିଛି । ସେଗୁଡ଼ିକ ହେଉଛି, ବୈଦିକ ସଂସ୍କୃତି, ଶାବର ସଂସ୍କୃତି, ଜୈନ ସଂସ୍କୃତି ଏବଂ ବୌଦ୍ଧ ସଂସ୍କୃତି । ଭାରତର କୌଣସି ଧର୍ମପୀଠରେ ଏଭଳି ପରସ୍ପରଠାରୁ ଭିନ୍ନ ଅଥଚ ବଳିଷ୍ଠ ସଂସ୍କୃତିର ସମନ୍ୱୟ ଘଟି ନାହିଁ । ତେଣୁ ଜଗନ୍ନାଥ ସଂସ୍କୃତି ଭାରତର ଅଦ୍ୱିତୀୟ ସଂସ୍କୃତି ।

୩୩ । ଉପରେ କୁହାଗଲା ଯେ, ଜଗନ୍ନାଥଧର୍ମର ଗୋଟିଏ ବିଶିଷ୍ଟ ଅଙ୍ଗ ହେଉଛି ବୈଦିକ ସଂସ୍କୃତି । ବୈଦିକ ଯୁଗର ବହୁ କାଳପରେ ଆସିଲା ପୁରାଣଯୁଗ । ପୁରାଣମାନଙ୍କରେ ତେତିଶକୋଟି ଦେବଦେବୀଙ୍କ କଥା କୁହାଯାଇଛି । ସମଗ୍ର ହିନ୍ଦୁ ଜଗତରେ ଜଗନ୍ନାଥ ହେଉଛନ୍ତି ଏକମାତ୍ର ଦେବତା, ଯାହାଙ୍କଠାରେ ତେତିଶକୋଟି ଦେବତା ଲୀନ ହୋଇଛନ୍ତି । ଏ ବିଚାର ମତାନ୍ତର ନାହିଁ ।

୩୪ । ତେତିଶ କୋଟି ଦେବତାଙ୍କ ଭିତରୁ ସର୍ବ ପ୍ରଧାନ ହେଉଛନ୍ତି ପାଞ୍ଚଜଣ; ଯଥା—(୧) ବିଷ୍ଣୁ, (୨) ଶିବ, (୩) ଦୁର୍ଗା,

(୪) ସୂର୍ଯ୍ୟ ଏବଂ (୫) ଗଣେଶ । ଗଣେଶ ସମସ୍ତଙ୍କ ମଧ୍ୟରେ 'ଅଗ୍ରପୂଜ୍ୟ' ବୋଲି କଥା ରହିଛି । (ଯଥା—"ଅଗ୍ରପୂଜ୍ୟୋ ଗଣାଧିପଃ)" ! ଏମାନଙ୍କୁ "ପଞ୍ଚଦେବତା" କୁହାଯାଏ । ଦକ୍ଷିଣ ଭାରତରେ ଏହି ପଞ୍ଚଦେବତାଙ୍କ ସହିତ କାର୍ତ୍ତିକେୟଙ୍କୁ ମଧ୍ୟ ସମାନ ଆସନ ଦେଇ ପୂଜା କରାଯାଏ ।

ଏହି କଥାକୁ ମନେରଖି ବର୍ତ୍ତମାନ ଭାରତର ଶତ ଶତ ମନ୍ଦିର ମାନଙ୍କ ଉପରେ ଦୃଷ୍ଟି ଦିଆଯାଉ । ଆପଣ ଯଦି କାଶୀ ବିଶ୍ୱନାଥ ମନ୍ଦିରକୁ ଯିବେ, ଦେଖିବେ ସମସ୍ତେ କାଶୀ ବିଶ୍ୱନାଥଙ୍କୁ ହିଁ ବନ୍ଦନା ବା ପ୍ରାର୍ଥନା କରୁଛନ୍ତି । କଲିକତା କାଳୀ ମନ୍ଦିରକୁ ଗଲେ ଦେଖିବେ, ସମସ୍ତ ଭକ୍ତ କାଳୀଙ୍କୁ ପ୍ରାର୍ଥନା ବା ଉପାସନା କରୁଛନ୍ତି । ଏପରି ଭାବରେ ଭାରତର ଯେଉଁ ମନ୍ଦିରକୁ ଯାଆନ୍ତୁ; ଆପଣ ଦେଖିବେ ଯେ, ସେହି ମନ୍ଦିରର ମୁଖ୍ୟଦେବତାଙ୍କୁ ହିଁ ଲୋକେ ବନ୍ଦନା କରୁଛନ୍ତି ।

ଏ ଦୃଷ୍ଟିରୁ ଆମର ଜଗନ୍ନାଥ ମନ୍ଦିର ସମଗ୍ର ପୃଥିବୀରେ ଅଦ୍ୱିତୀୟ । ଆପଣ ଦେଖିବେ, ଜଗନ୍ନାଥଙ୍କ ଜଗମୋହନରେ ଠିଆହୋଇ ବିଭିନ୍ନ ଦେବତାଙ୍କର ଭକ୍ତ ହାତଯୋଡ଼ି ପ୍ରାର୍ଥନା କରୁଛନ୍ତି । କାଶୀରୁ ଆସିଥିବା ଶିବଭକ୍ତ ଜଗନ୍ନାଥଙ୍କୁ ଚାହିଁ "ଶିବ ତାଣ୍ଡବ" ସ୍ତୋତ୍ର ପାଠ କରୁଛି । ବିହାରରୁ ଆସିଥିବା ଭୈରବ ଉପାସକ ଜଗନ୍ନାଥଙ୍କୁ ଚାହିଁ "କାଳ-ଭୈରବ" ସ୍ତୋତ୍ର ପାଠ କରୁଛି । କର୍ଣ୍ଣାଟକରୁ ଆସିଥିବା ଶ୍ରୀବିଦ୍ୟା ଉପାସକ (ଅର୍ଥାତ୍ ତ୍ରିପୁରସୁନ୍ଦରୀ—ଲଳିତାଙ୍କ ଉପାସକ) "ଲଳିତା—ସହସ୍ରନାମ" ପାଠ କରୁଛି । ମହାରାଷ୍ଟ୍ରରୁ ଆସିଥିବା ଗଣପତି ଭକ୍ତ ଗଣେଶ ଭାବରେ ଜଗନ୍ନାଥଙ୍କୁ ବନ୍ଦନା କରୁଛି । କୌଣସି ସୂର୍ଯ୍ୟଭକ୍ତ ସୂର୍ଯ୍ୟ ଭାବରେ ଜଗନ୍ନାଥଙ୍କୁ ବନ୍ଦନା କରୁଛି । ଅଯୋଧ୍ୟାରୁ ଆସିଥିବା ରାମଭକ୍ତ ରଘୁନାଥ ସ୍ୱଭାବରେ ପ୍ରାର୍ଥନା କରୁଅଛି । ମଥୁରା ବୃନ୍ଦାବନ ଅଞ୍ଚଳରୁ

ଆସିଥିବା କୌଣସି କୃଷ୍ଣଭକ୍ତ ଶ୍ରୀକୃଷ୍ଣ ଭାବରେ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଅଛୁ ।

ଥରେ କଲିକତାରେ ଏବଂ ଥରେ ମହୀଶୂରରେ ଭାଷଣ ଦେଇ ଏହି ଲେଖକ ଉପର ଲିଖିତ ବିଷୟ ବୁଝାଇଲା ବେଳେ ଭାରତର ସୁବିଖ୍ୟାତ ପ୍ରାଚ୍ୟତତ୍ତ୍ୱ ବିଶାରଦ ପ୍ରଫେସର ସୁନୀତି କୁମାର ଚାଟାର୍ଜୀ ଏବଂ କର୍ଣ୍ଣାଟକର ମହାମହିମ ଧର୍ମଗୁରୁ ବୀରେନ୍ଦ୍ର ହେଗେଡ଼େ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲେ ଏବଂ ଏମନ୍ତ ହିନ୍ଦୁ ଜଗତରେ ଧର୍ମଚେତନାର ଏଭଳି ସମନ୍ୱୟ ବିରଳ ବୋଲି ପ୍ରତିପାଦିତ ହୋଇଥିଲା ।

୩୫ । ଜଗନ୍ନାଥଙ୍କ ପୂଜା ପଦ୍ଧତିର ବିଶେଷତ୍ୱ ଏହି ଯେ, ଏଥିରେ ଚାରିପ୍ରକାର ପୂଜା ପଦ୍ଧତି ଅନୁଷ୍ଠିତ ହୋଇଥାଏ, ଯଥା –ବୈଦିକ ପୂଜା, ପୌରାଣିକ ପୂଜା, ତାନ୍ତ୍ରିକ ପୂଜା ଏବଂ ଶାକ୍ତ ପୂଜା । ଭାରତର ଅନ୍ୟ କେଉଁଠାରେ ଏଭଳି ବିଭିନ୍ନ ପୂଜା ପଦ୍ଧତିର ଏକତ୍ର ସମାବେଶ ଦେଖିବାକୁ ମିଳେ ନାହିଁ ।

୩୬ । ଅତୀତରେ ପୁରୀ ସହରରେ ସାତ ଶହରୁ ଅଧିକ ମଠବାଡ଼ି ଥିଲା । ଏବେ ମଧ୍ୟ ଦେଢ଼ ଶହରୁ ଅଧିକ ମଠ କାର୍ଯ୍ୟ କରୁଅଛି ।

୩୭ । ତୀର୍ଥଯାତ୍ରୀ ହିସାବରେ ଯେଉଁମାନେ ପୁରୀକୁ ଯାଆନ୍ତି, ସେମାନେ ପଞ୍ଚତୀର୍ଥରେ (ଜଳଥିବା ପାଞ୍ଚୋଟି) ସ୍ଥାନରେ ସ୍ନାନ କରିବା ବିଧି ଚଳିଆସିଛି । ସେଗୁଡ଼ିକ ହେଲା—(୧) ମାର୍କଣ୍ଡ ପୋଖରୀ, (୨)ଶ୍ୱେତଗଙ୍ଗା (୩) ରୋହିଣୀ କୁଣ୍ଡ (୪) ଇନ୍ଦ୍ରଦ୍ୟୁମ୍ନ ପୋଖରୀ ଏବଂ (୫) ମହୋଦଧି ବା ସମୁଦ୍ର । ମତାନ୍ତରେ ଅନ୍ୟ ଭାବରେ ସ୍ନାନଯୋଗ୍ୟ ପାଞ୍ଚୋଟି ସ୍ଥାନ ଠାବ କରାଯାଇଛି ।

୩୮ । ଜଗନ୍ନାଥଙ୍କର ବାରମାସରେ ତେର ଯାତ୍ରା ହୁଏ । ତେବେ ତାର ଭିତରୁ ଚାରୋଟି ହେଉଛି ବଡ଼ଧରଣର; ଯଥା—(୧) ରଥଯାତ୍ରା, (୨) ଝୁଲଣଯାତ୍ରା, (୩) ଦେବସ୍ନାନ ପୂର୍ଣ୍ଣିମା ଏବଂ (୪) ~~ଗୁଣ୍ଡିଚା~~ଯାତ୍ରା ।
ଚନ୍ଦନ

୩୯ । ରଥଯାତ୍ରାଦିନ ଗଜପତି ମହାରାଜା ଚଣ୍ଡାଳ ବେଶରେ ଝାଡ଼ୁଧରି ଜଗନ୍ନାଥଙ୍କ ରଥ ଅଗଣା ସଫା କରିଥାଆନ୍ତି । "ଭଗବାନଙ୍କ ଆଗରେ ରାଜା ଏବଂ ଚଣ୍ଡାଳର କୌଣସି ପ୍ରଭେଦ ନାହିଁ", ରଥଯାତ୍ରା ମାଧ୍ୟମରେ ଓଡ଼ିଆସଂସ୍କୃତିର ଏ ମହାବାଣୀ ପ୍ରଚାର କରାଯାଇଛି ।

୪୦ । ପ୍ରତ୍ୟେକ ହିନ୍ଦୁ ଶଙ୍କରାଚାର୍ଯ୍ୟଙ୍କ ସମୟରୁ ଭାରତର ଚାରି-କୋଣରେ ଥିବା "ଚାରିଧାମ" ବୁଲିଆସୁଛନ୍ତି । ଯେଉଁମାନେ କୌଣସି ନା କୌଣସି କାରଣରୁ ଚାରିଧାମ କରିପାରିବେ ନାହିଁ, ସେମାନେ ପୁରୀ ଦେଉଳର ପଶ୍ଚିମ ଦ୍ୱାର ନିକଟରେ ଥିବା "ଚତୁର୍ଦ୍ଧାମ ମନ୍ଦିର"ରେ ଭାରତର ଚାରିଧାମରେ ପୂଜାପାଉଥିବା ଚାରିପ୍ରକାର ମୂର୍ତ୍ତିଙ୍କୁ ଏକସମୟରେ ଦେଖିପାରିବେ ।

୪୧ । ସୂର୍ଯ୍ୟୋଦୟ ପୂର୍ବରୁ ଜଗନ୍ନାଥଙ୍କ ପୂଜାକାମ ଆରମ୍ଭ ହୁଏ । ରାତି ଅଧପର୍ଯ୍ୟନ୍ତ ବିଭିନ୍ନ ନୀତି ନିୟମ ଅନୁସାରେ କାର୍ଯ୍ୟମାନ ହୁଏ । ଏହାଦ୍ୱାରା ସତେ ଯେପରିକି ଜଗନ୍ନାଥ-ସଂସ୍କୃତି ସମଗ୍ର ମାନବସମାଜକୁ କହୁଛି "ହେ ମାନବ ! ତୁମେ ଅଳସୁଆ ହୋଇ ବସିନରହି, ସୂର୍ଯ୍ୟୋଦୟରୁ ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ବିଭିନ୍ନ କାର୍ଯ୍ୟକର ।"

୪୨ । ପୂର୍ବ ଦ୍ୱାରବାଟେ ଦେଉଳକୁ ପଶିଲେ ବାଇଶଗୋଟି ପାହାଚ ଉପରେ ଯିବାକୁ ହୁଏ । ଆଗେ ମାଆମାନେ ତାଙ୍କର ଛୋଟ ଛୋଟ

ପିଲାଙ୍କୁ ନେଇ ବାଇଶପାହାଚରେ (ଶୁଆଇଦେଇ) ଉପରୁ ତଳକୁ ଗଡ଼ାଇ ଦେଉଥିଲେ । କାରଣ ଶତ ଶତ ଭକ୍ତଙ୍କର ପାଦବାଜ ବାଇଶପାହାଚ ପବିତ୍ର ହୋଇଯାଇଛି ।

୪୩ । ମନ୍ଦିର କଳା ଦୃଷ୍ଟିରୁ ଦେଖିଲେ ଭାରତର ଚାରିଦିଗରେ ଚାରିପ୍ରକାର ମନ୍ଦିରକଳା ଗଢ଼ିଉଠିଛି । ଯଥା—

(୧) ଉତ୍ତର-ଭାରତରେ ନାଗର ଶୈଳୀ

(୨) ପଶ୍ଚିମ-ଭାରତରେ ବେଶର ଶୈଳୀ

(୩) ଦକ୍ଷିଣ-ଭାରତରେ ଦ୍ରାବିଡ଼ ଶୈଳୀ ଏବଂ

(୪) ପୂର୍ବଭାରତରେ କଳିଙ୍ଗ ଶୈଳୀ ।

ସବୁ ସଂସ୍କୃତିର ସାର ଗ୍ରହଣକାରୀ ଓଡ଼ିଆମାନେ ଏ ଚାରୋଟିଯାକ ମନ୍ଦିରକଳାର ବିଶେଷତ୍ୱ ଗ୍ରହଣ କରି କଳା କ୍ଷେତ୍ରରେ ବିଳକ୍ଷଣ ସମନ୍ୱୟ ଦେଖାଇଛନ୍ତି । ଜଗନ୍ନାଥମନ୍ଦିର ଏଥିର ପ୍ରମାଣ ।

୪୪ । ଜଗନ୍ନାଥଙ୍କୁ 'ନବଗ୍ରହ' ମୂର୍ତ୍ତି ମଧ୍ୟ କୁହାଯାଏ । ଆମର ଜ୍ୟୋତିଷୀମାନେ ନଅଗୋଟି ଗ୍ରହକୁ ନେଇ ଗଣନା କରନ୍ତି । ଯଥା— ସୂର୍ଯ୍ୟ, ଚନ୍ଦ୍ର ଇତ୍ୟାଦି । ପୁରୀର ପଣ୍ଡିତ ଶ୍ରୀ ସଦାଶିବ ମିଶ୍ରବ୍ରହ୍ମା ବଡ଼ ସୂକ୍ଷ୍ମସୂକ୍ଷ୍ମ ଭାବରେ କହୁଅଛନ୍ତି ଯେ, ଜଗନ୍ନାଥଙ୍କ ଦେହରେ ନଅଗୋଟିଯାକ ଗ୍ରହ ଆଶ୍ରୟ ନେଇ ପରି ରହିଅଛି । କଥାରେ ତ ଅଛି—"ଗ୍ରହରୂପୀ ଜନାର୍ଦ୍ଦନ" । ଅର୍ଥାତ୍ ଜନାର୍ଦ୍ଦନ (ବିଷ୍ଣୁ ବା ଜଗନ୍ନାଥ) ନିଜେ ହିଁ ନବଗ୍ରହ ରୂପେ ପ୍ରକାଶ ପାଇଛନ୍ତି; ଯଥା—ସୂର୍ଯ୍ୟ ଏବଂ ଚନ୍ଦ୍ର ଦୁଇଟି

ଗୋଲାକାର ପଦାର୍ଥ । ସେ ଦୁଇଟି ଜଗନ୍ନାଥଙ୍କର ଦୁଇ ଆଖି ରୂପେ ସ୍ଥାନ ପାଇଛନ୍ତି । ସତେ ଯେପରିକି ଭକ୍ତମାନେ କହୁଛନ୍ତି, ଜଗନ୍ନାଥ ଦିନରେ ଓ ରାତିରେ, ସବୁବେଳେ ପିଏ ଯେଉଁଠାରେ ଯାହା କରିବ (ପାପ ବା ପୁଣ୍ୟ) ସବୁ ଦେଖିପାରୁଛନ୍ତି । ଅନ୍ୟ ଗ୍ରହଗୁଡ଼ିକୁ ମଧ୍ୟ ଏହି ଧମରେ ଉପଲବ୍‌ଧି କରିବାକୁ ହେବ ।

୪୫ । ଜଗନ୍ନାଥଙ୍କ ମନ୍ଦିରକୁ 'ଦଶାବତାର' ମନ୍ଦିର କୁହାଯାଏ । ବିଷ୍ଣୁ ରୂପକ ଜଗନ୍ନାଥ ହିଁ ଦଶ ଅବତାର ରୂପେ ଆତ୍ମପ୍ରକାଶ କରିଥିଲେ । ଅବତାରଗୁଡ଼ିକ ହେଲା—(୧) ମତ୍ସ୍ୟ (ମାଛ), (୨) କୂର୍ମ (କଇଁଚ ବା କଇଁଛ), (୩) ବରାହ (ବଣରେ ରହୁଥିବା ବାର୍‌ହା) (୪) ନୃସିଂହ (ଅଧେ ମନୁଷ୍ୟ ଏବଂ ଅଧେ ସିଂହ—ନର ରୂପକ ସିଂହ) (୫) ବାମନ (ଅତି ଛୋଟିଆ ମନୁଷ୍ୟ ରୂପେ ଭଗବାନଙ୍କର ଆତ୍ମପ୍ରକାଶ) । (୬) ପରଶୁରାମ, (୭) ରାମଚନ୍ଦ୍ର, (୮) ବଳରାମ, (୯) ବୁଦ୍ଧ, (୧୦) କଳ୍‌କି । ବର୍ତ୍ତମାନ ସୁଦ୍ଧା ନଅଗୋଟି ଅବତାର ହୋଇସାରିଛି ଏବଂ ଆଉ ଗୋଟିଏ ଅବତାର ବାକି ଅଛି ।

ଜଗନ୍ନାଥଙ୍କ ଠାରେ ବିଭିନ୍ନ ଭାବରେ ଏହି ନଅଗୋଟି ଅବତାରଙ୍କୁ ଖୋଜି ହିଆଯାଇଛି । କାରଣ, ଜଗନ୍ନାଥ ହେଉଛନ୍ତି ଅବତାରୀ । ତାଙ୍କଠାରୁ ବର୍ତ୍ତମାନ ସୁଦ୍ଧା ନଅଗୋଟି ଅବତାର ପ୍ରକାଶ ପାଇଛନ୍ତି (ଯେପରିକି ବଡ଼ଗଛର ଗଣ୍ଡିରୁ ବଡ଼ ବଡ଼ ଶାଖା ଜନ୍ମଲାଭ କରିଥାଏ, ଉଦାହରଣ ସ୍ୱରୂପ, ପ୍ରଥମ ଅବତାର ହେଉଛନ୍ତି ମତ୍ସ୍ୟ ଅବତାର । ଆପଣ ରୋହି, ଭାକୁର ପ୍ରଭୃତି ମାଛ ଦେଖନ୍ତୁ । ସେମାନଙ୍କର ଆଖିରେ ଡୋଳା ଅଛି; କିନ୍ତୁ ତାହା ଉପରେ କିଛି ଘୋଡ଼ଣୀ ନାହିଁ (ଯେପରିକି ମନୁଷ୍ୟମାନଙ୍କ ଆଖିରେ ପତା ରୂପକ ଘୋଡ଼ଣୀ ଥାଏ) । ଜଗନ୍ନାଥଙ୍କର

ଆଖି ଦୁଇଟି ମାଛ ଆଖି ପରି, ତାଙ୍କ ଆଖି ଉପରେ କୌଣସି ଘୋଡ଼ଣୀ ନାହିଁ । ସୁତରାଂ, ଜଗନ୍ନାଥଙ୍କ ଆଖି ଦୁଇଟି ମତ୍ସ୍ୟ ଅବତାରର ସଙ୍କେତ । ବରାହ ସବୁବେଳେ ଗୋଟିଏ ଗୁହା ବା ଗୁମ୍ଫା ଭିତରେ ଥାଏ । ବେଳେ-ବେଳେ ପଦାକୁ ଆସେ (ଏବଂ ସ୍ୱରଆଡ଼େ ହାଲହୁଲ ପଡ଼ିଯାଏ) ଜଗନ୍ନାଥ ମଧ୍ୟ ନୀଳଗିରିର ଏକ କନ୍ଦରା ଭିତରେ ଅଛନ୍ତି । ପଣ୍ଡିତମାନେ "ନୀଳଗିରି କନ୍ଦରା"ର ବର୍ଣ୍ଣନା କରିଛନ୍ତି । ସେ ଯେତେବେଳେ ବର୍ଷରେ ଦୁଇଥର ପଦାକୁ ଆସନ୍ତି (ଦେବସ୍ନାନ ପୂର୍ଣ୍ଣିମ ବେଳେ ଓ ଶ୍ରୀଗୁଣ୍ଡିଚ୍ଚବେଳେ) ସ୍ୱରଆଡ଼େ ହାଲହୁଲ ବା ହଇଚଇ ପଡ଼ିଯାଏ ।

କଥାରେ ଅଛି, 'ସିଂହକଟୀ' । ଏହାର ଅର୍ଥ ସିଂହର ଅଣ୍ଟା ବଡ଼ ସରୁ । ଜଗନ୍ନାଥଙ୍କର ଅଣ୍ଟା ମଧ୍ୟ ଦେହ ତୁଳନାରେ ଅତ୍ୟନ୍ତ ସରୁ ।

ଦ୍ୱିତୀୟ ଅବତାର ହେଉଛି କୂର୍ମ ଅବତାର । ଏହି କୂର୍ମ ଅବତାରର ସଙ୍କେତ ହେଉଛି 'କୂର୍ମ ପ୍ରାଚୀର' । ଯେକୌଣସି ଦ୍ୱାର ବାଟେ ଆପଣ ବଡ଼ଦେଉଳ ଭିତରକୁ ପଶିଗଲେ, ଜଗନ୍ନାଥଙ୍କ ପାଖକୁ ଯାଇପାରିବେ ନାହିଁ । କିଛି ବାଟ ଗଲା ପରେ ଆଉ ଗୋଟାଏ ପାଚେରୀ ପଡ଼ିବ, ଯାହାକ ମନ୍ଦିର ସ୍ୱରପଟେ ଘେରି ରହିଛି । ଏହାର ନାମ 'କୂର୍ମ ପ୍ରାଚୀର' । କଇଁଚର ଗୋଡ଼ ହାତ (?) ଯେପରି ତା ସ୍ୱରପଟେ ଥିବା ଖୋଳ ଭିତରେ ଘୋଡ଼ିଇ ହୋଇ ରହେ, ଏହି କୂର୍ମ ପ୍ରାଚୀର ଜଗନ୍ନାଥଙ୍କୁ ସେହିପରି ଘୋଡ଼ାଇ କରି ରଖିଛି ।

ପଞ୍ଚମ ଅବତାର ହେଉଛି ବାମନ ଅବତାର । ରଥଯାତ୍ରା ଦିନ ଜଗନ୍ନାଥ ଯେତେବେଳେ ରଥ ଉପରକୁ ଉଠିଯାନ୍ତି, ସେତେବେଳେ

ତାଙ୍କର ନାମହୁଏ ବାମନ । ରଥ ଉପରେ 'ବାମନ' ନାମକ ଜଗନ୍ନାଥଙ୍କୁ ଦର୍ଶନ କଲେ ମୁକ୍ତି ମିଳଯାଏ ବୋଲି କୁହାଯାଇଛି । ଯଥା—

"ରଥେ ତୁ ବାମନଂ ଦୃଷ୍ଟ୍ୱା
ପୁନର୍ଜନ୍ମ ନ ବିଦ୍ୟତେ ।"

ଅତଏବ, ଏହା ହେଉଛି ବାମନ ଅବତାରର ସଙ୍କେତ ।

ଜଗନ୍ନାଥ ମଧ୍ୟ ରାମଚନ୍ଦ୍ରଙ୍କ ବେଶରେ ସଜ୍ଜିତ ହୁଅନ୍ତି ।

(୭) ବଳରାମ ତ ନିଜେ ରତ୍ନବେଦୀ ଉପରେ ରହିଅଛନ୍ତି ।

(୮) ଜଗନ୍ନାଥଙ୍କୁ ବୁଦ୍ଧ ଅବତାର କୁହାଯାଏ । ଅନେକ କବି ଜଗନ୍ନାଥଙ୍କର 'ବୁଦ୍ଧ' ଅବତାର ସମ୍ପର୍କରେ ଲେଖିଯାଇଛନ୍ତି । (ଏହି ଅବତାର ତତ୍ତ୍ୱ ବ୍ୟାଖ୍ୟାନ ସମ୍ପୂର୍ଣ୍ଣ ରୂପେ ଏହି ଲେଖକର ଜଗନ୍ନାଥଙ୍କର ଦଶଅବତାରର କଥା କାହିଁକି କୁହାଯାଏ, ଏହା ଜାଣିବା ପାଇଁ ଦିନେ ବଡ଼-ଦେଉଳରେ ବସି ଚିନ୍ତା କରୁ କରୁ ମନରେ ଏଭଳି ଭାବ ଆସିଲା । କେତେଜଣଙ୍କୁ କହିଲି । ଅନେକେ ପସନ୍ଦ କଲେ । ତେଣୁ ତାକୁ ଏଠାରେ ଲେଖିପକାଇଲି) ।

୪୭ । ବଡ଼ଦେଉଳରେ ଆମେ ଯେଉଁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦେଖୁ, ସେମାନଙ୍କୁ ପୁରାଣରେ 'ତ୍ରିମୂର୍ତ୍ତି' ମଧ୍ୟ କୁହାଯାଏ, ଯଥା—

(କ) ସୁଭଦ୍ରା ହେଉଛନ୍ତି 'ବ୍ରହ୍ମା' । ଜନନୀ ଯେପରି ସନ୍ତାନ-ମାନଙ୍କୁ ଜନ୍ମ ଦିଏ, ବ୍ରହ୍ମା ସେହିପରି ଏ ବିଶ୍ୱବ୍ରହ୍ମାଣ୍ଡକୁ ଜନ୍ମ ଦେଇଛନ୍ତି । ତେଣୁ ତାଙ୍କୁ ନାରୀ ରୂପେ କଳ୍ପନା କରାଯାଇଛି ।

(ଖ) ଜଗନ୍ନାଥ ହେଉଛନ୍ତି ବିଷ୍ଣୁ । ପୁରାଣ ମତରେ ସେ ହେଉଛନ୍ତି ବିଶ୍ୱବ୍ରହ୍ମାଣ୍ଡର ପାଳନ କର୍ତ୍ତା ।

(ଖ) ବଳଭଦ୍ର ହେଉଛନ୍ତି ଶିବ ବା ରୁଦ୍ର । ସେ ହେଉଛନ୍ତି ବିଶ୍ୱ-ବ୍ରହ୍ମାଣ୍ଡର ସଂହାର କର୍ତ୍ତା । ତେଣୁ ଏହି ତିନମୂର୍ତ୍ତି ହେଉଛନ୍ତି ପୁରାଣର ବ୍ରହ୍ମା, ବିଷ୍ଣୁ ଓ ଶିବ ।

ଏହାଛଡ଼ା ଶ୍ରୀ ଜଗନ୍ନାଥଙ୍କୁ ବୈଷ୍ଣବଧର୍ମର ପ୍ରତୀକ, ସୁଭଦ୍ରାଙ୍କୁ ଶାକ୍ତଧର୍ମର ପ୍ରତୀକ ଏବଂ ବଳଭଦ୍ରଙ୍କୁ "ବୀରଭଦ୍ର ରୂପକ ଶିବ"ଙ୍କର ପ୍ରତୀକ ବୋଲି କୁହାଯାଉଛି ।

ଆଉରି ମଧ୍ୟ ବୌଦ୍ଧଧର୍ମର ତ୍ରି-ରତ୍ନ ଏବଂ ଜୈନଧର୍ମର ତ୍ରି-ରତ୍ନ ରୂପେ ମଧ୍ୟ ତିନମୂର୍ତ୍ତିଙ୍କର ବ୍ୟାଖ୍ୟାନ କରାଯାଇଛି ।

୪୭ । ୧୯୭୫ ପୂର୍ବରୁ ଅନେକ ଲୋକଙ୍କର ଧାରଣା ଥିଲା ଯେ, ପୁରୀ ଦେଉଳ ହେଉଛି ଇଟା ତିଆରି ଦେଉଳ । ଅର୍ଥାତ୍ ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର ଏବଂ କୋଣାର୍କର ସୂର୍ଯ୍ୟମନ୍ଦିର ପରି ଏ ମନ୍ଦିର ପଥର ନିର୍ମିତ ନୁହେଁ । ୧୯୭୩-୭୪ରେ ଏ ସମ୍ପର୍କରେ ବିଭିନ୍ନ ସ୍ତରରେ ଆଲୋଡ଼ନ ସୃଷ୍ଟି ହୋଇଥିଲା । ପରୀକ୍ଷା କରିବାରୁ ଜଣାଗଲା ଯେ, ପୁରୀ ମନ୍ଦିର ଇଟାରେ ନିର୍ମିତ ନୁହେଁ । ଏହା ମଧ୍ୟ ପଥରରେ ନିର୍ମିତ । ଆଲୋଚନା ହେବାରୁ ସମସ୍ତେ ଜାଣିଲେ ଯେ, ଦୁଇଶହବର୍ଷ ତଳୁ (ଏପରିକି, ପ୍ରାୟ ଚାରିଶହ ବର୍ଷ ତଳୁ) ବଡ଼ଦେଉଳ ଦେହରେ ଚୂନର ଏକ ବୋଳ ଦିଆଯାଇ ପଥର କାମଗୁଡ଼ିକୁ ଘୋଡ଼ାଇ ଦିଆଯାଇଛି । ଏହା ଠିକ୍

କେଉଁ ତାରଖରେ ହୋଇଥିଲା ଏବଂ କେଉଁ କାରଣରୁ ହୋଇଥିଲା, ସେ ସମ୍ପର୍କରେ ମତଭେଦ ଅଛି । କିନ୍ତୁ ୧୯୭୫ ମେ ମାସରେ ଲକ୍ଷ୍ମୀଙ୍କ ମନ୍ଦିର ଉପରୁ ଚୂନବୋଳ ଛଡ଼ାଇବାର କାର୍ଯ୍ୟ ଆରମ୍ଭ ହୋଇଥିଲା । ତା'ପରେ ଜଗନ୍ନାଥ ମନ୍ଦିର ଉପରୁ ଚୂନଛଡ଼ା କାମ ଆରମ୍ଭ ହୋଇଛି । ଦଶ ବାରବର୍ଷ ହେଲା ଏହି କାର୍ଯ୍ୟ ଚାଲିଛି । ଠାଏ ଠାଏ ଏକ ହାତ ବହଳର ଚୂନ ପରଦା ମଧ୍ୟ ରହିଅଛି । ଗୋଟିଏ ବୋଝେଇ ଟ୍ରକର ତଳଅଂଶ ଯଦି ହାଲୁକା ରହେ ଏବଂ ଉପରଆଡ଼କୁ ଖୁବ୍ ଓଜନଆ ଜିନଷ ରହେ, ତେବେ ସେ ବୋଝେଇ ଟ୍ରକ୍ ଓଲଟି ପଡ଼ିବାର ସମ୍ଭାବନା ବେଶି । ଏହା ଅତି ସାଧାରଣ ଓ ଅନୁଭୂତ-ସିଦ୍ଧ କଥା । ଅଥଚ, ବଡ଼ଦେଉଳର ଚୂନ ଛଡ଼ାଯାଉଛି ତଳଆଡ଼ୁ । ଉପରେ ରହିଲା ଶହ ଶହ ଟ୍ରକ୍ ବୋଝେଇ ହେଲାଭଳି ଓଜନଆ ଚୂନର ପରଦା । ଉପରଆଡ଼ୁ ଚୂନ ଛଡ଼ାଇ ଆଣିଥିଲେ । ଚୂନ-ଭାରରେ ମନ୍ଦିର ଭାଙ୍ଗିଯିବାର ଭୟ ନଥାନ୍ତା । ଏବେ କିନ୍ତୁ ସେ ଭୟ ରହୁଛି ।

ମନେହେଉଛି, କଳିଯୁଗରେ ପାପ ବୃଦ୍ଧି ଘଟିବାରୁ ଜଗନ୍ନାଥ ଆଉ ରହିବାକୁ ଚାହୁଁ ନାହାନ୍ତି । ସେଥିପାଇଁ ବିଶାରଦ ଇଞ୍ଜିନିୟରମାନଙ୍କ ମନରେ ଓଲଟା ବୁଦ୍ଧି ଭର୍ତ୍ତି କରିଦେଇଛନ୍ତି । ପ୍ରତିଦିନ ଏବର (୮୮-୮୯) ଅଧା ଚୂନ ଛଡ଼ାହୋଇଥିବା ମନ୍ଦିରକୁ ଦେଖି ହଜାର ହଜାର ଯାତ୍ରୀ ଗୋଟିଏ କଥା ପଚାରୁଛନ୍ତି, "ଉପର ଆଡ଼ୁ ଚୂନ ଛଡ଼ା ନଯାଇ, ତଳଆଡ଼ୁ କାହିଁକି ଛଡ଼ାଯାଉଛି ।" ଏହାର ଉତ୍ତର ଦେବ କିଏ ?

୪୮ । ଏବେ ମଧ୍ୟ ସମଗ୍ର ଭାରତରେ ଯେତେ ଯେତେ ଦେବ-ମନ୍ଦିର ରହିଛି, ସେମାନଙ୍କ ଭିତରେ ସବୁଠାରୁ ଉଚ୍ଚ ଦେଉଳ ହେଉଛି

ଆମର ଏହି ପୁରୀ ଦେଉଳ । ମତାନ୍ତରେ, ସମଗ୍ର ଭାରତରେ ଦେଖିବାକୁ ଥିବା ଉଚ୍ଚ ମନ୍ଦିର ମଧ୍ୟରୁ ଗୋଟିଏ ହେଉଛି ଆମର ଏହି ପୁରୀ ଦେଉଳ ।

୪୯ । ଗୁଣ୍ଡିଚାଘରର ଅଞ୍ଚଳର ବଡ଼ଦାଣ୍ଡକୁ "ଶରଧାବାଲି" କୁହାଯାଉଥିଲା । ସିଂହଦ୍ୱାରର ସଡ଼କ ପତନ ଅପେକ୍ଷା ଶରଧାବାଲିର ପତନ ବହୁତ ଖାଲୁଆ ଥିଲା । କିନ୍ତୁ ଏବେ (୧୯୮୭ଠାରୁ) ଲକ୍ଷ ଲକ୍ଷ ଟଙ୍କାର ବାଲିପକାଇ ସେହି, ଅତ୍ୟନ୍ତ ପ୍ରଶସ୍ତ ରାସ୍ତାକୁ ଉଚ୍ଚ କରିଦିଆ-ଯାଇଛି । ସେହି ସ୍ଥାନକୁ ସରକାରୀ ବସ୍‌ଷ୍ଟାଣ୍ଡ୍ ନିର୍ମାଣ ଭାଇଛି ।

୫୦ । ଜଗନ୍ନାଥ ମନ୍ଦିର ଭିତରେ (ଅର୍ଥାତ୍ ନାଟମନ୍ଦିର ଭିତରେ) ଏକ 'ହୁଣ୍ଡି' ସ୍ଥାପନ କରାଯାଇଛି । ଦକ୍ଷିଣ-ଭାରତର ସୁବିଖ୍ୟାତ ତିରୁପତି ମନ୍ଦିରରେ ଯେଉଁ ବିଶାଳକାୟ ହୁଣ୍ଡି ସ୍ଥାପନା କରାଯାଇଛି, ତାକୁ "ହୁଣ୍ଡି" କୁହାଯାଏ । ତାର ଅନୁକରଣରେ ପୁରୀ ଦେଉଳର ନାଟମନ୍ଦିରରେ ଏକ "ହୁଣ୍ଡି" ସ୍ଥାପନା କରାଯାଇଛି । ଭକ୍ତମାନେ ଜଗନ୍ନାଥଙ୍କ ପାଇଁ ଯାହାସବୁ ଟଙ୍କା ପଇସା, ଅଳଙ୍କାର ଇତ୍ୟାଦି ଦେବାକୁ ଚାହାନ୍ତି, ତାହାସବୁ ଏହି ହୁଣ୍ଡି ଭିତରକୁ ପକାଇ ଦେଇଥାଆନ୍ତି । ଏହି ହୁଣ୍ଡିରୁ ଯେତେ ଟଙ୍କା ମିଳେ, ତାହାର ଗୋଟିଏ ଅଂଶ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର ପରିଚାଳନା ଖର୍ଚ୍ଚ ପାଇଁ ଦେଇ ଦିଆଯାଏ ।

୫୧ । ପୁରୀକୁ ଯେଉଁମାନେ ଯାଆନ୍ତି, ସେମାନେ ଆଜି କେତୋଟି କଥା ଉପଲବ୍ଧି କରିପାରନ୍ତି—

(କ) ବିଭିନ୍ନ ସମୟରେ ସାହିଯାତ ବାହାରେ । ନାନାବେଶରେ ଯୁବକମାନେ ବାହାରନ୍ତି । ସେତେବେଳେ ଯେଉଁସବୁ ବାଦ୍ୟ ବାଜେ,

ସେସବୁ ଏକପ୍ରକାରର ନୁହେଁ । ତେଣୁ ବିଭିନ୍ନ ସାହିର ଭିନ୍ନ ଭିନ୍ନ ବାଦ୍ୟ ଉପଯୋଗ୍ୟ ହୋଇଥାଏ ।

(ଖ) ଚନ୍ଦନଯାତ୍ରାବେଳେ ଯୁବକମାନେ ସାଗରରେ ନରେନ୍ଦ୍ର ପୋଖରୀରେ ପହଁରନ୍ତି । ଅନୁମିତ ହୁଏ ଯେ, ଯୁଗଯୁଗ ଧରି ବାଣିଜ୍ୟ କରୁଥିବା ଓଡ଼ିଆଜାତି ଦୂର ସମୁଦ୍ର ଯାତ୍ରା ସକାଶେ ଲୋକଙ୍କୁ ତାଲିମ ଦେବା ପାଇଁ ଚନ୍ଦନଯାତ୍ରାବେଳେ ଦୀର୍ଘ ଏକୋଇଶ ଦିନ ଧରି, ସାଗରରେ ପାଣିରେ ବୁଡ଼ିରହିବାର ବ୍ୟବସ୍ଥା କରିଥିଲେ । ବିଶେଷତଃ ପାଣିରେ ବୁଡ଼ି ରହିବା ପାଇଁ ଯେଉଁମାନେ ତାଲିମ ପାଇଥିବେ, ଗଭୀର ସମୁଦ୍ରରେ ବୋଇତ ବୁଡ଼ିଗଲେ ମଧ୍ୟ ସେମାନେ ଦିନଦିନ ଧରି ପାଣିରେ ପହଁରି ପହଁରି କୌଣସି ସ୍ଥଳଭାଗରେ ପହଞ୍ଚିଯାଇପାରନ୍ତି । ଏଭଳି ପରିକଳ୍ପନା କରା-ଯାଇଥିବ ।

(ଗ) ଦଶହରାବେଳେ ଏବଂ ଗଣେଶ ପୂଜାବେଳେ ଗତ କେତେ ବର୍ଷ ଧରି ମୂର୍ତ୍ତି ତିଆରି କରାଯାଇ ପୂଜା କରାଯାଉଛି । କିନ୍ତୁ ଓଡ଼ିଶାର ଯେକୌଣସି ସହର ତୁଳନାରେ ପୁରୀର ମୂର୍ତ୍ତିଗୁଡ଼ିକ ଆକାର-ପ୍ରକାରରେ ଖୁବ୍ ବଡ଼ । ଦେଖିଲେ ମନରେ ଅପୂର୍ବ ଆନନ୍ଦ ଜାତ ହୁଏ ।

(ଘ) ପୁରୀ ବଡ଼ଦାଣ୍ଡ ଶ୍ରେଷ୍ଠ ବଡ଼ ସ୍ମରଣୀୟ (Souvenir) ଜିନିଷ କିଣିବାର ଏକ ଅଦ୍ୱିତୀୟ ସ୍ଥାନ । ଓଡ଼ିଶାରେ ତାର ପଟାନ୍ତର ନାହିଁ । ଭାରତର ବିଭିନ୍ନ ସ୍ଥାନରେ ମିଳୁଥିବା ନାନାପ୍ରକାରର ମନମତାଣିଆ ହାତକାମ ପାଇଁ ପୁରୀର ବଡ଼ଦାଣ୍ଡର ଦୋକାନଗୁଡ଼ିକୁ ଦେଖିବାର କଥା । ବିଶେଷକରି ପଥର କାମ, ପଟ୍ଟଚିତ୍ର ଓ ଅନ୍ୟ କେତୋଟି ହାତକାମ ପାଇଁ ପୁରୀର ଯଥେଷ୍ଟ ସୁନାମ ରହିଛି । କଟକର ପ୍ରସିଦ୍ଧ ତାରକସି କାମ ପାଇଁ ମଧ୍ୟ ସ୍ୱତନ୍ତ୍ର ଦୋକାନ ରହିଛି ।

(ଙ) ପୁରୀ ଦେଉଳର ମହାପ୍ରସାଦ ସମଗ୍ର ହିନ୍ଦୁଜାତିର ଏକ ବିଶେଷ ଜିନିଷ । ମହାପ୍ରସାଦରେ ଜାତିଭେଦ ନାହିଁ । ସମସ୍ତ ଜାତିର ଲୋକ ଗୋଟିଏ ପାତ୍ରରୁ ଏକ ସମୟରେ ମହାପ୍ରସାଦ ସେବନ କରିଥାଆନ୍ତି । ଜାତିଭେଦ ବିଖଣ୍ଡିତ ଭାରତବର୍ଷକୁ ସହିତ ଓ ସମନ୍ୱିତ କରିବାପାଇଁ ଓଡ଼ିଆ ଜାତିର ଏହି ଅବଦାନ ସମଗ୍ର ହିନ୍ଦୁଜାତି ପକ୍ଷରେ ବିସ୍ମୟକର ।

(ଚ) ଶେଷରେ ନବ-କଳେବର କଥା । ଯେଉଁବର୍ଷ ଯୋଡ଼ା ଆଷାଢ଼ ପଡ଼େ (ବର୍ଷକ ଭିତରେ ଦୁଇଟି ଆଷାଢ଼ ମାସ ପଡ଼େ, ସେବର୍ଷ ନବକଳେବର ଉତ୍ସବ ଅନୁଷ୍ଠିତ ହୁଏ । ନବ = ନୂଆ, କଳେବର = ଦେହ । ଯେଉଁ ଦେହରେ (ଅର୍ଥାତ୍ କାଠମୂର୍ତ୍ତିରେ ଦେବତାମାନେ ଶୋଭା ପାଉଛନ୍ତି) । ସେ ଦେହଗୁଡ଼ିକ ବଦଳାଯାଏ । କେତେକ ବିଶେଷ ଧରଣର ବିଧିବିଧାନ ଅନୁସାରେ ନୂଆ ନିମଗଛ ଠିକ କରାଯାଇ ଗଣ୍ଡି ଅଣାଯାଏ ଏବଂ ନୂଆକରି ମୂର୍ତ୍ତି ନିର୍ମାଣ କରାଯାଏ । ପୁରୁଣା ମୂର୍ତ୍ତିଗୁଡ଼ିକ ବେଢ଼ା ଭିତରେ ଥିବା କୋଇଲି ବୈକୁଣ୍ଠକୁ ଚାଲିଯାଆନ୍ତି । ଆଠ ବର୍ଷରୁ କୋଡ଼ିଏ ବର୍ଷ ଭିତରେ ଯୋଡ଼ା ଆଷାଢ଼ ପଡ଼େ । କିନ୍ତୁ ମୋଟାମୋଟି ବାର ବର୍ଷରେ ଥରେ ପଡ଼େ ବୋଲି ଲୋକମାନେ କହନ୍ତି । ଏହାର ବିସ୍ତୃତ ବିବରଣୀ ଥାଇ ପୁସ୍ତକମାନ ପ୍ରକାଶପାଇଛି । ବେଳେବେଳେ ସାତ ଆଠ ଲକ୍ଷ ଲୋକ ନବକଳେବର ଦେଖିବା ପାଇଁ ପୁରୀରେ ଉପସ୍ଥିତ ହୁଅନ୍ତି ।

(ଛ) ଯେଉଁମାନେ ନିୟମ ଦୃଷ୍ଟିରୁ ଶ୍ରୀମନ୍ଦିର ମଧ୍ୟରେ ପ୍ରବେଶ କରିବା ମଧ୍ୟରୁ ବଞ୍ଚିତ, ସେମାନେ ସିଂହଦ୍ୱାର ସାମନାରେ ଥିବା ରଘୁନନ୍ଦନ ପାଠାଗାରର ଛାତ ଉପରକୁ ଯାଇ ଶ୍ରୀମନ୍ଦିରର କେତେକ ଅଞ୍ଚଳ ଦେଖିପାରିବେ ।

# ଦ୍ୱିତୀୟ ଖଣ୍ଡ

ପୃଷ୍ଠା ୧ ରୁ ୫୨ (ଚ) ପର୍ଯ୍ୟନ୍ତ =

## ଶ୍ରୀକ୍ଷେତ୍ରର ବିଭିନ୍ନ ଦର୍ଶନୀୟ ସ୍ଥାନର ବିବରଣୀ

ପୃଷ୍ଠା ୩୫ ରୁ ୧୩୪ ପର୍ଯ୍ୟନ୍ତ =

## ଶ୍ରୀକ୍ଷେତ୍ର ସମ୍ପର୍କରେ ବିବିଧ ଆଲୋଚନା

# ପୁରୀର ଦର୍ଶନୀୟ ସ୍ଥାନ

ପୁରୀର ଦର୍ଶନୀୟ ସ୍ଥାନଗୁଡ଼ିକୁ ତିନି ଭାଗରେ ବିଭକ୍ତ କରା-ଯାଇପାରେ ।

(କ) ଶ୍ରୀଜଗନ୍ନାଥ ମନ୍ଦିର ।

(ଖ) ସମୁଦ୍ର ବେଳା (Sea-Beach) ।

(ଗ) ବିଭିନ୍ନ ମଠ, ମନ୍ଦିର ଓ ବିବିଧ ଆକର୍ଷଣୀୟ ସ୍ଥାନ ।

## ଶ୍ରୀ ଜଗନ୍ନାଥ ମନ୍ଦିର :—

ଏହା ପୁରୀର ସର୍ବଶ୍ରେଷ୍ଠ ଆକର୍ଷଣ ।

ଏବେ ଜଗନ୍ନାଥ ମହାପ୍ରଭୁଙ୍କର ଯେଉଁ ସୁଦୃଶ୍ୟ ଓ ବିଶାଳ ମନ୍ଦିର ଠିଆହୋଇଛି ତାହା ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲା । ତେଣୁ ଏହାର ବୟସ ପ୍ରାୟ ଆଠ ଶହ ବର୍ଷ । ଏହା ଆଗରୁ ମଧ୍ୟ ସେଇ ଜାଗାରେ ଏକାଧିକ ଥର ଜଗନ୍ନାଥଙ୍କ ପାଇଁ ମନ୍ଦିରମାନ ନିର୍ମିତ ହୋଇଥିଲା ଏବଂ ମନ୍ଦିର ପୁରାତନ ହେବା ପରେ, ପୁଣି ନୂତନ ମନ୍ଦିର ନିର୍ମିତ ହୋଇଥିଲା । ଆଜିର ଏହି ମନ୍ଦିରର ଉଚ୍ଚତା ବେଢ଼ା ଭିତରର ପଥରଠାରୁ ପ୍ରାୟ ଶହେ ପଞ୍ଚାନବେ ଫୁଟ ଏବଂ ବଡ଼ ଦାଣ୍ଡ ପଥରରୁ ଦୁଇ ଶହ ଚଉଦ ଫୁଟ । (ତେବେ ଯେତେବେଳେ ଦୁଇ ଶହ ଚଉଦ ଫୁଟ ବୋଲି ମାପ କରାଯାଇଥିଲା ସେତେବେଳେ ବଡ଼ଦାଣ୍ଡର ପଥର ଦୁଇ ତିନି ଫୁଟ ଖାଲି ଥିଲା, ତେଣୁ ସଡ଼କ ପଥରରୁ ଏବେ ଦୁଇ ଶହ ଦଶ-ବାର ଫୁଟ ହୋଇପାରେ) ।

## ଅରୁଣସ୍ତମ୍ଭ :—

ସିଂହଦ୍ୱାର୍ ବାଟେ ପୁରୀ ମନ୍ଦିର ଭିତରେ ପଶିବା ପୂର୍ବରୁ ଦ୍ୱାର ମୁହଁରେ ଠିଆହୋଇଥିବା ବିଶାଳକାୟ ଶିଳାସ୍ତମ୍ଭ ସର୍ବପ୍ରଥମେ ଦୃଷ୍ଟିଗୋଚର ହୁଏ । ଏହା ପୁରୀ ଦେଉଳର ଅଂଶ ନୁହେ । କୋଣାର୍କ ମନ୍ଦିର୍ ଚବିଶଗୋଟି ଚକ ଉପରେ ଠିଆହୋଇଥିବା ଗୋଟିଏ ରଥ ଆକାରରେ ନିର୍ମିତ । ରଥ ଚଳାଇବାକୁ ସାରଥି ଦରକାର୍ । ଅରୁଣ ହେଉଛନ୍ତି ସୂର୍ଯ୍ୟଙ୍କର ସାରଥି । ସୂର୍ଯ୍ୟ ହିଁ କୋଣାର୍କର ଉପାସ୍ୟ ଦେବତା । ସେଥିପାଇଁ ପ୍ରଥମେ କୋଣାର୍କ ମନ୍ଦିର୍ ଆଗରେ କଳା ମୁଗୁନି ପଥରର ଏବଂ ଚଉତିରିଶ ଫୁଟ ଉଚ୍ଚର ଷୋଳପାଖ ବିଶିଷ୍ଟ ଏହି ଖମ୍ବ ଠିକ୍ ଏହିପରି ଭାବରେ ଥିଆ ହୋଇଥିଲା । ଏହା ଉପରେ ଅରୁଣଙ୍କର ଖୋଦିତ ମୂର୍ତ୍ତି ଦେଖା-ଯାଉଛି । ଆଜକୁ ପ୍ରାୟ ଦୁଇ ଶହ ବର୍ଷ ପୂର୍ବେ ଓଡ଼ିଶାରେ ମରହଟ୍ଟା ଶାସନ ଚାଲିଥିବା ବେଳେ ସେମାନଙ୍କ ଯତ୍ନରେ ଅର୍ଦ୍ଧଭଗ୍ନ ଓ ପରିତ୍ୟକ୍ତ କୋଣାର୍କ ମନ୍ଦିରରୁ ଏହି ଅରୁଣଖମ୍ବଟି ଅଣାଯାଇ ଭାରତର ପ୍ରସିଦ୍ଧ ତୀର୍ଥସ୍ଥଳ ପୁରୀରେ, ସର୍ବଦା ଜନଗହଳି ବଡ଼ ଦେଉଳ ଆଗରେ ସ୍ଥାପନ କରାଯାଇଥିଲା । ଏହା ପୂର୍ବପରି ଅଖଣ୍ଡ ଏବଂ ସୁନ୍ଦର ଦେଖାଯାଉଛି । କୋଣାର୍କ-ଶିଳ୍ପୀଙ୍କର ସିଦ୍ଧହସ୍ତତା ଖମ୍ବର ତଳଅଂଶରେ ଥିବା ଗଜ ଓ ସିଂହ ମୂର୍ତ୍ତିରୁ ମଧ୍ୟ ଜାଣିହେବ । ଗୋଟିଏ ମୁଣ୍ଡରେ ଦୁଇଟି ଦେହ ଯୋଡ଼ାଯାଇ ଦୁଇଟି ହାତୀ ଓ ଦୁଇଟି ସିଂହ କିପରି କୌଶଳରେ ଖୋଦିତ ହୋଇଅଛି, ଖମ୍ବର ମୂଳ ଅଂଶରେ ତାହା ଉପଭୋଗ କରିହେବ ।

## ସହରର ବିରାଟ ବେଦୀ :—

ସେକାଳରେ ଧର୍ମକୁ ଭିତ୍ତି କରି ବହୁ ଯୁଦ୍ଧ ହେଉଥିବା ହେତୁ, ନିରାପତ୍ତା ଦୃଷ୍ଟିରୁ ପୁରୀ ମନ୍ଦିରକୁ ଏକ ବିରାଟ ଦୁର୍ଗ ଆକାରରେ ନିର୍ମାଣ କରାଯାଇଥିଲା । କୁହାଯାଏ, ଏହାର ଦୁଇଟି ପାଚେରୀ ଅଛି — ବାହାର ପାଚେରୀର ନାମ 'ମେଘନାଦ ପ୍ରାଚୀର' ଏବଂ ଭିତରେ ଥିବା ପାଚେରୀର ନାମ 'କୂର୍ମ ପ୍ରାଚୀର ।' ମେଘନାଦ ପ୍ରାଚୀରକୁ 'ବାହାର ପ୍ରାଚୀର' ବୋଲି ସାଧାରଣତଃ କୁହାଯାଇଥାଏ ଏବଂ ସେ ଅନୁସାରେ ପର୍ଯ୍ୟଟକମାନଙ୍କୁ ବୁଝାଇ-ଦିଆଯାଇଥାଏ । ଏହା କିନ୍ତୁ ଏକ ବଡ଼ ଧରଣର ଭୁଲ । ଆମେ ଆମର ବିବାହ, ବ୍ରତ, ପ୍ରଭୃତି ବେଳେ ଦାଣ୍ଡରେ କି ଅଗଣାରେ ପ୍ରାୟ ହାତେ ଉଚ୍ଚର ବେଦୀ ତିଆରି କରିଥାଉ । ଗୃହପଟର ସମତଳ ଭୂମିଠାରୁ ବେଦୀଟି ଯଦି ଏକ ହାତ ଉଚ୍ଚ ହେଲା, ତେବେ ବେଦୀ ଗୃହପଟେ ହାତେ ଉଚ୍ଚର ବାଡ଼ ବା କାନ୍ଥ ନିଶ୍ଚୟ ରହିଲା । କିନ୍ତୁ ତାକୁ କାନ୍ଥ ବା ବାଡ଼ ବୋଲି କହିବା ଠିକ୍ ନୁହେଁ । ମନେକରନ୍ତୁ ବେଦୀଟିର ଲମ୍ବା ଚଉଡ଼ା ହେଲା ପାଞ୍ଚହାତରେ ପାଞ୍ଚ ହାତ । ଧରନ୍ତୁ, ଆମେ ପାଞ୍ଚ ଇଞ୍ଚ ଚଉଡ଼ାରେ ପାଞ୍ଚ ହାତରେ ପାଞ୍ଚହାତ ଲମ୍ବାର ଓ ହାତେ ଉଚ୍ଚର ଇଟା ବସାଇଦେବା ଏବଂ ତା ଭିତରେ ମାଟି ଭର୍ତ୍ତି କରିଦେବା । ବେଦୀ ତିଆରି ସରିବା ପରେ ଦେଖାଯିବ ଇଟାପାଚେରୀଟା ଆଉ ସ୍ୱତନ୍ତ୍ର ଭାବେ ନାହିଁ । ତାହା ବେଦୀର ଗୋଟେ ଅଙ୍ଗ ହୋଇଗଲାଣି । ଇଟା ବାଡ଼କୁ ଆଉ ବାଡ଼ ବା ପାଚେରୀ ବୋଲି କହିଲେ ଠିକ୍ ହେବ ନାହିଁ ।

ପୁରୀ ବଡ଼ ଦେଉଳର ସମଗ୍ର ବେଢ଼ାକୁ ଗୋଟାଏ ବେଦୀ ବୋଲି ଧରାଯାଇପାରେ । ଏହାର ଉଚ୍ଚତା ଥିଲା ୨୨ ଫୁଟ । ଏବେ ଚତୁର୍ଦ୍ଦିଗର ସଡ଼କ ପତ୍ତନ ଆଗ ଅପେକ୍ଷା ଉଚ୍ଚା ହୋଇ-ଯାଇଥିବାରୁ ବେଦୀର ଉଚ୍ଚତା ବାହାରଠାରୁ ବାଇଶ ଫୁଟ ନ ହୋଇ କେଉଁଠାରେ ପନ୍ଦର ଫୁଟ, ଷୋଳଫୁଟ ବା ଅଠର ଫୁଟ ହେଉଛି । ସୁତରାଂ, 'ମେଘନାଦ ପ୍ରାଚୀର' ବୋଲି ଯାହାକୁ କୁହାଯାଉଛି, ତାହା ବାହାରପଟୁ ଦେଖିଲେ ସିନା ପ୍ରାଚୀର, ଭିତର ପଟୁ ଦେଖିଲେ ପ୍ରାଚୀର ନୁହେ । ଉପର ଉଦାହରଣରେ ଟାଣିଇଞ୍ଚିଆ ଇଟାବାଡ଼ ଭିତରପଟୁ ମାଟି ସହିତ ମିଶି ବେଦୀରେ ମିଶିଯାଇଥିଲା ପରି ମେଘନାଦ ପ୍ରାଚୀରଟି ଭିତର ପଟ ମନ୍ଦିର ବେଢ଼ା ରୂପକ ମହାବେଦୀ ସଙ୍ଗେ ଏକାବେଳକେ ମିଶିଯାଇ ବେଦୀର ଗୋଟାଏ ଅଙ୍ଗ ହୋଇଯାଇଛି ।

ତେଣୁ ପର୍ଯ୍ୟଟକମାନଙ୍କୁ ଏଇ ଅସଲ ଧାରଣାଟା ଦେବା ପାଇଁ ଯଦି ଆମେ କହିବ ।—"ଦେଖନ୍ତୁ, ପୁରୀ ସହରର ମଧ୍ୟଭାଗରେ ଗୋଟିଏ ବୃହତ୍ Raised Platform (ବେଦୀ) ଅଛି, ଯାହାର କ୍ଷେତ୍ରଫଳ ୪୮୦,୦୦୦(ଚାରି ଲକ୍ଷ) ବର୍ଗଫୁଟରୁ ଢେର୍ ବେଶୀ." ସେମାନେ ତାହା ଦେଖିବା ପାଇଁ ବ୍ୟଗ୍ର ହୋଇଉଠିବେ । ଏପରି କହିବା ଦ୍ୱାରା ସତ୍ୟର ଅପଳାପ ଆଦୌ କରାଯାଉ ନାହିଁ । ବରଂ, ବେପାରୀ ତା ଜିନିଷମାନଙ୍କ ପ୍ରତି ଗରାଖମାନଙ୍କୁ ଆକୃଷ୍ଟ କରିବା ପାଇଁ ଯେଉଁଭଳି କୌଶଳରେ ଜିନିଷର ମହତ୍ତ୍ୱ ପ୍ରକାଶ କରିଥାଏ, ଆମେ ପର୍ଯ୍ୟଟନ-ବ୍ୟବସାୟ କ୍ଷେତ୍ରରେ ସେହି କୌଶଳ ମାତ୍ର ଅବଲମ୍ବନ କରିଥାଉ । ହୁଏତ ମୋଗଲସମ୍ରାଟ୍ ଯେତେବେଳେ ଭାରତବିଖ୍ୟାତ ଫତେପୁର ସିକ୍ରି ଦୁର୍ଗ (ପ୍ରସିଦ୍ଧ Agra ସହର

ନିକଟରେ) ନିର୍ମାଣ କଲେ (ଯାହା କି ଆଜିର ଭଗ୍ନ ଅବସ୍ଥାରେ ମଧ୍ୟ ସମଗ୍ର ଭାରତବର୍ଷରେ ଏକ ବଶିଷ୍ଟ ଆକର୍ଷଣ), ସେତିକିବେଳେ ହୁଏତ ଜଗନ୍ନାଥ ମନ୍ଦିରରୁ ଏହି ମହାବେଦୀର ଅନୁକରଣରେ, ଗୋଟିଏ ବିଶାଳ ସମତଳ କ୍ଷେତ୍ର ମଧ୍ୟରେ ଏକ ମହାବେଦୀ ନିର୍ମାଣ କରାଇ, ତାର ଉପରେ ତାଙ୍କର ସେହି ନୂତନ ଦୁର୍ଗ ନିର୍ମାଣ କରିଥିବେ । ଏ ଭଳି ବିଶାଳ ବେଦୀ ସହର ମଝିରେ ଥିବାର ଖବର ହିଁ ସ୍ଥାନଟି ଦେଖିବାକୁ ମନକୁ ଚଞ୍ଚଳ କରାଏ ।

## ପୁରୀ ମନ୍ଦିର ଭିତରେ ଦେଖିବା ଜିନିଷ :—

ପୁରୀ ମନ୍ଦିର ଏକ ବିରାଟ କାର୍ଯ୍ୟ, ଭଲ କରି ଦେଖିବାକୁ ହେଲେ ଅନ୍ତତଃ ଆଠ ଘଣ୍ଟାରୁ କମ୍ ସମୟ ଲାଗିବ ନାହିଁ । ମହାବେଦୀର ମୋଟାମୋଟି ମଧ୍ୟସ୍ଥଳରେ ଦେଉଳ ଠିଆହୋଇଛି ଏବଂ ବିଭିନ୍ନ ସମୟରେ ନିର୍ମିତ ହୋଇଥିବା ତଥା ବିଭିନ୍ନ ଦେବଦେବୀ ପୂଜା ପାଉଥିବା ପ୍ରାୟ ତିରିଶ ଗୋଟି ମନ୍ଦିର ବଡ଼ ଦେଉଳ ଗୃହ ପଟେ ରହିଅଛି । ତେବେ ବିଧି ଅନୁସାରେ କାମ ଚଳାଇବାକୁ ହେଲେ ଅନ୍ତତଃ ତିନୋଟି ମନ୍ଦିର ଦେଖିସାରି ଜଗନ୍ନାଥଙ୍କୁ ଦର୍ଶନ କରିବା ବିଧେୟ । ସେଇ ତିନୋଟି ମନ୍ଦିର ହେଲା, ଗଣେଶ ମନ୍ଦିର, ବିମଳା ମନ୍ଦିର ଓ ଲକ୍ଷ୍ମୀ ମନ୍ଦିର ।

## ମନ୍ଦିର ଭିତରକୁ ପ୍ରବେଶ :—

ଆଗରୁ କହିଦେବା ଦରକାର, କେବଳ ହିନ୍ଦୁମାନେ ହିଁ ଜଗନ୍ନାଥ ମନ୍ଦିର ଭିତରକୁ ଯାଇପାରିବେ । ଏହା ଆଇନ-ସଙ୍ଗତ । ପୃଥିବୀରେ ଏବେ ବି ଏଭଳି ପ୍ରଖ୍ୟାତ ଧର୍ମପୀଠ ଅଛି, ଯେଉଁଠାରେ

ତାଙ୍କୁ ଦେଖିବା ପାଇଁ ହିନ୍ଦୁ ପ୍ରଭୃତି ଲୋକେ ଗଲେ, ଆଠ ମାଇଲ୍ ଦୂରରେ ହିଁ ରହିବାକୁ ପଡ଼ିବ । ବର୍ତ୍ତମାନ ସୁଦ୍ଧା ସେହି ଧର୍ମାବଲମ୍ବୀ-ମାନେ ଏହି ପରମ୍ପରା-ବିଧିକୁ ଅକ୍ଷରେ ଅକ୍ଷରେ ପରିପାଳନ କରନ୍ତି । ଆମେ କିନ୍ତୁ ସିଂହଦ୍ୱାର ପର୍ଯ୍ୟନ୍ତ ପୃଥିବୀର ସମସ୍ତ ଧର୍ମର ଲୋକଙ୍କୁ ଯିବା ପାଇଁ ଅନୁମତି ଦେଇଅଛୁ ।

## ପୁରୀ ଦେଉଳର ଚାରିଦ୍ୱାର :—

ପୁରୀ ଦେଉଳ ଭିତରକୁ ଯିବାପାଇଁ ଚାରୋଟି ଦ୍ୱାର କରାଯାଇ, ମହାବେଦୀ ଉପରକୁ ଉଠିବା ପାଇଁ ପାହାଚମାଳା ଗଢ଼ି ଦିଆଯାଇଛି । ପ୍ରଧାନ ଦ୍ୱାର ହେଲା ପୂର୍ବଦ୍ୱାର, ଯେଉଁ ବାଟେ ଆମେ ସମସ୍ତେ ସାଧାରଣତଃ ଦେଉଳକୁ ଯାଉ । ଦ୍ୱାର ମୁହଁରେ ଦୁଇଟି ସିଂହ (ପଥରର) ଦୁଇ ପଟେ ସ୍ଥାପିତ । ତେଣୁ ଏଦ୍ୱାର ନାମ 'ସିଂହଦ୍ୱାର' । ଉତ୍ତର ପଟେ ଭିତର ପ୍ରାଚୀର ପାଖେ ଦୁଇଟି ହାତୀ ଅଛନ୍ତି । ତେଣୁ ତାର ନାମ 'ହାତୀଦ୍ୱାର' । ଦକ୍ଷିଣ ପଟେ ବାହାରେ ଦୁଇଟି ଘୋଡ଼ା ଉପରେ ଜଗନ୍ନାଥ, ବଳଭଦ୍ର ଶୋଭା-ପାଉଛନ୍ତି । ତେଣୁ ଏଦ୍ୱାର ନାମ 'ଅଶ୍ୱଦ୍ୱାର ।' ପଶ୍ଚିମ ପଟେ ଯେଉଁ ଦ୍ୱାର ଅଛି, ତାର ଦୁଇ ପଟେ ଦୁଇଟି ବାଘ ପ୍ରତିଷ୍ଠିତ । ତେଣୁ ତାର ନାମ 'ବାଘଦ୍ୱାର' । ତତ୍ତ୍ୱବିଦମାନେ କହନ୍ତି, ଆଗେ କେବଳ ତିନି ଦ୍ୱାର ଥିଲା ଏବଂ ପଶ୍ଚିମ ଦ୍ୱାର ନ ଥିଲା । ମରହଟ୍ଟା ଶାସନ-କାଳରେ ପ୍ରାୟ ଦୁଇ ଶହ ବର୍ଷତଳେ ଏହି ଦ୍ୱାର ଖୋଲାଯାଇଥିବାର କୁହାଯାଇଥାଏ ।

## ବାଇଶ ପାହାଚ :—

ସିଂହଦ୍ୱାର ବାଟେ ଦେଉଳ ଭିତରକୁ ପଶିଲେ ପ୍ରଥମେ ୨୨ ଟି ପାହାଚ ଦେଇ ଯିବାକୁ ହୁଏ । ଏବେ ବାଇଶଟି ପାହାଚ ପ୍ରକୃତରେ ନାହିଁ । ଆଗେ ଥିଲା ଏବଂ ପରେ ମରାମତି ବେଳେ ତାର ସଂଖ୍ୟା କମିଯାଇଛି କମ୍ବା ଏକାବେଳକେ ସିଂହଦ୍ୱାରର ଚୌକାଠରୁ ଗଣି ୨୨ ସଂଖ୍ୟା ମାନିବାକୁ ହେବ । ଶଙ୍କର, ଚୈତନ୍ୟ, ନାନକ ପ୍ରମୁଖ ଧର୍ମଗୁରୁମାନେ ଏବାଟେ ଭିତରକୁ ଯାଇଥିଲେ; ଲକ୍ଷ ଲକ୍ଷ ଲୋକ ଭଗବତ୍‌ଭାବ ହୃଦୟରେ ପୋଷଣ କରି ଏବାଟେ ହିଁ ଦର୍ଶନ ପାଇଁ ଯାଇଥାନ୍ତି । ସୁତରାଂ ସେମାନଙ୍କର ପଦସ୍ପର୍ଶରେ ଏହି ପାହାଚଶ୍ରେଣୀ ନିତ୍ୟ ପବିତ୍ର । ତେଣୁ ଓଡ଼ିଶାର ମାଆମାନେ ତାଙ୍କ ଶ୍ରେଷ୍ଠ ଶ୍ରେଷ୍ଠ ଛୁଆଙ୍କୁ ନେଇ ଗୋଟିଏ ଦୁଇଟି ପାହାଚରେ ଶୁଆଇ ଗଡ଼ାଇଥାନ୍ତି । ଏବେ ଧୀରେ ଧୀରେ ଏହି ପ୍ରଥା ଲୋପପାଇଯାଉଛି ।

## ରୋଷଘର :—

ବାଇଶ ପାହାଚରେ ଉପରକୁ ଉଠିଲାବେଳେ ବାମ ପାଖରେ 'ରୋଷଘର' ପଡ଼େ । ଏହାକୁ ଏବେ ମଧ୍ୟ ପୃଥିବୀର ବୃହତ୍ତମ 'ରୋଷଘର' ଏବଂ 'ଆନନ୍ଦ ବଜାର'କୁ ପୃଥିବୀର ବୃହତ୍ତମ 'ହୋଟେଲ' ବୋଲି ବିଦେଶୀ ପର୍ଯ୍ୟଟକମାନେ ବର୍ଣ୍ଣନା କରିଥାଆନ୍ତି । ଏଥିରେ ଦୁଇ ଶହ ଚୁଲୀ ଅଛି ଏବଂ ସାତ ଶହ ଲୋକ ରୋଷେଇ କାମ କରନ୍ତି । ଅଧଘଣ୍ଟାକ ଭିତରେ ପନ୍ଦର କୋଡ଼ିଏ ହଜାର ଲୋକଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରିହୁଏ ।

ସକାଳେ ବଲ୍ଲଭ ଦେଲେ ମଧ୍ୟାହ୍ନ ଭୋଜନ ବେଳକୁ ଅନ୍ନ ଓ ବ୍ୟଞ୍ଜନ ଆଦରେ (ଡାଲି, ବେସର, ମହୁର, ଶାଗ, ଖଟା, ଖିରି ପ୍ରଭୃତି) ପ୍ରାୟ ଏକ ଲକ୍ଷ ଲୋକଙ୍କୁ ଖୁଆଇପାରିବାର ବ୍ୟବସ୍ଥା ପୁରୀ ଛଡ଼ା ଏବେ ମଧ୍ୟ ପୃଥିବୀରେ ବିରଳ ।

ରନ୍ଧା ଭଣ୍ଡାରରେ ରାନ୍ଧିବା ଲୋକର ହାତ ବାଜେ ନାହିଁ । ଏପରି କି ଏହାକୁ ଥାଳି, ପାତ୍ର ପ୍ରଭୃତିରେ ନ ବାଢ଼ି, ରନ୍ଧା ହୋଇଥିବା ମାଟିପାତ୍ର (କୁଡ଼ୁଆ) ଦେହରୁ ସିଧା ସଳଖ ଖିଆଯାଏ ବୋଲି ଏହାର ନାମ ଅବଢ଼ା (ଯାହା ସାଧାରଣ ରନ୍ଧା ଭଣ୍ଡାର ପରି ବଢ଼ା ବଢ଼ି କରାଯାଏ ନାହିଁ) । ଏ ଭିତରକୁ କାହାରିକୁ ଛଡ଼ାଯାଏ ନାହିଁ । କିନ୍ତୁ ବାହାରୁ ସାମାନ୍ୟ ଭାବରେ ଦେଖିବାର ବ୍ୟବସ୍ଥା ଅଛି ।

## ବଟ ଗଣେଶ ମନ୍ଦିର ପଥେ :—

ବାଇଶି ପାହାଚ ଯେଉଁଠାରେ ଶେଷ, ସେଠାରେ ଭିତର ପ୍ରାଚୀର ବା କୂର୍ମ ପ୍ରାଚୀର ଠିଆହୋଇଛି । ଦ୍ୱାରର ଦୁଇ ପଟେ ଥିବା ମନୋରମ ଖୋଦନ-କଳା ଅବଶ୍ୟ ଉପଭୋଗ୍ୟ ।

ସେହି ପାଚେରି ପାରହୋଇ ଭିତର ଅଗଣାକୁ ଗଲେ ଆଗରେ ବଡ଼ ଦେଉଳର ଭୋଗମଣ୍ଡପ ଆଖି ଆଗରେ ପଡ଼େ । ସେଠୁ ବାମ ପଟକୁ କିଛି ବାଟ ଯାଇ ପୁଣି ଡାହାଣକୁ ୨୦/୩୦ ପାଦ ଯାଇ ବାମକୁ ବୁଲିଲେ ବଟ ଗଣେଶ ମନ୍ଦିର ଦୁଆରେ ପହଞ୍ଚିବାକୁ ହୁଏ । ଗଣେଶ 'ବିଘ୍ନରାଜ' । ତେଣୁ ତାଙ୍କୁ ପ୍ରୀତ କଲେ ଦେବ ଦର୍ଶନରେ ବାଧା ଉପୁଜିବାର ଆଶଙ୍କା ନାହିଁ । ଏଥିପାଇଁ ଅଗ୍ରପୂଜ୍ୟ ଗଣାଧିପଙ୍କୁ ପ୍ରଥମେ ବନ୍ଦନା କରାଯାଏ ।

## ବିଚିତ୍ର ମୂଷା :—

ମୂଷା ହେଉଛି ଗଣେଶଙ୍କର ବାହନ । ସୁତରାଂ, ଗଣେଶଙ୍କ ସମ୍ମୁଖରେ କଳାମୁଗୁନି ପଥରର ମୂଷାଟିଏ ସ୍ଥାପିତ । କିନ୍ତୁ ଇଏ ଏକ ବିଚିତ୍ର ମୂଷା । ସମଗ୍ର ଭାରତ ବୁଲିଥିବା ତୀର୍ଥଯାତ୍ରୀ-ମାନେ ବି କହନ୍ତି, ଏଭଳି ମୂଷା ସେମାନେ ଆଉ କେଉଁଠାରେ ଦେଖି ନାହାନ୍ତି । ମୂଷା ତିଆରି ହୋଇଥିବା ପଥରଟି ଏକ ଅଦ୍ଭୁତ ପଥର । କଣ୍ଟିଆଳ କାକୁଡ଼ି ଉପରେ ହାତ ଆଙ୍ଗୁଠି ବୁଲାଇଲେ ଯେପରି କଣ୍ଟା କଣ୍ଟା ଲାଗେ, ମୂଷା । ଦେହରେ ଆଙ୍ଗୁଠି ଚଳାଇଲେ ସେହିପରି କଣ୍ଟା କଣ୍ଟା ଲାଗେ । କେତେ ଲକ୍ଷ ଲୋକଙ୍କର ହାତ ତା ଉପରେ ବୁଲିଲାଣି, ଅଥଚ, କଣ୍ଟାର ମୁନଗୁଡ଼ିକ ମାଖନା ହୋଇ ନାହିଁ ।

## ବିମଳା ମନ୍ଦିର :—

ସେଠାରୁ ମୁକ୍ତିମଣ୍ଡପ ସ୍ତମ୍ଭତଳ ଦେଇ ଟିକିଏ ପଶ୍ଚିମକୁ ଗଲେ ବିମଳାମନ୍ଦିରରେ ପହଞ୍ଚିବାକୁ ହୁଏ । ବିମଳାପୀଠ ସମଗ୍ର ଭାରତର ଗୋଟିଏ ପ୍ରସିଦ୍ଧ ଶାକ୍ତପୀଠ । ବର୍ଷକେ ଥରେ ଷୋଳ ଦିନ ପର୍ଯ୍ୟନ୍ତ ତହିଁରେ ତାନ୍ତ୍ରିକ ପୂଜା ହୁଏ ଏବଂ ସେହି ସମୟରେ ନାରୀମାନେ ମନ୍ଦିର ଭିତରକୁ ଛଡ଼ାଯାଆନ୍ତି ନାହିଁ । ଜଗନ୍ନାଥଙ୍କୁ ଯେଉଁ ଭୋଗ ଅର୍ପଣ କରାଯାଏ, ତାହା ପ୍ରସାଦ ହୁଏ । ମାତ୍ର ସେହି ଭୋଗ ବିମଳାଙ୍କୁ ପୁଣି ଥରେ ଅର୍ପଣ କରାଗଲେ ତାହା ହୁଏ 'ମହାପ୍ରସାଦ' । 'ମହାପ୍ରସାଦ' ପରି ସାମ୍ୟ ଓ ମୈତ୍ରୀର ପ୍ରତୀକ ସମଗ୍ର ହିନ୍ଦୁ ଜଗତରେ ଆଉ କିଛି ନାହିଁ । ଜାତିଭେଦ ଦ୍ୱାରା ଖଣ୍ଡ

ବିଖଣ୍ଡିତ ହିନ୍ଦୁ-ଭାରତରେ ସକଳ ଜାତିର ଲୋକଙ୍କୁ ଏକତ୍ର ମିଳାଇବାରେ, ବସାଇବାରେ ଓ ଏକାଠି ଖୁଆଇବାରେ ବିଧାତା ଯଦି କିଛି ଗୋଟାଏ ଅଲୌକିକ ପଦାର୍ଥ ସୃଷ୍ଟି କରିଥାଆନ୍ତି, ତାହା ହେଉଛି ଆମ ଜଗନ୍ନାଥ ମନ୍ଦିରର 'ମହାପ୍ରସାଦ' ।

ଅତୀତରେ ଭାରତର ବିଭିନ୍ନ ଅଞ୍ଚଳର ଉଚ୍ଚ ବ୍ରାହ୍ମଣ-କୁଳଜାତ ପଣ୍ଡିତମାନେ ପୁରୀକୁ ଆସି, ମନ୍ଦିରର ଏହି ବିଧି କଥା ଜାଣିବା ପରେ ଓଡ଼ିଶାକୁ ଘୃଣା ଚକ୍ଷୁରେ ଦେଖିଛନ୍ତି । ଓଡ଼ିଶାର ପଣ୍ଡିତମାନେ ଲିବ ମାତ୍ର ହଟିନଯାଇ ଶାସ୍ତ୍ରାର୍ଥ କରିବାକୁ ସେମାନଙ୍କୁ ଆହ୍ୱାନ ଦେଇଛନ୍ତି । ଶେଷରେ ସେମାନେ ପରାଜିତ ହୋଇ ତଥାକଥିତ ନିମ୍ନ ଜାତିର ଲୋକଙ୍କ ହାତରୁ ମହାପ୍ରସାଦ ସେବନ କରିଛନ୍ତି !!!

ପୁରୀ ମନ୍ଦିରକୁ ଆସି ଆଜି ଭାରତର ବହୁ ବିଶିଷ୍ଟ ଲୋକ ଏ ରହସ୍ୟ ଜାଣିବାପରେ ବିସ୍ମୟ ଏବଂ ଆବେଗର ସହିତ କହିଛନ୍ତି—

"ତାହାହେଲେ, ଭାରତର ପ୍ରତ୍ୟେକ ନଗର ଏବଂ ପଲ୍ଲୀରେ ଗୋଟିଏ ଗୋଟିଏ ଜଗନ୍ନାଥ ମନ୍ଦିର ସ୍ଥାପିତ ହେବା ଦରକାର ।" ଜୟ, ଓଡ଼ିଆ ସଂସ୍କୃତିର ଜୟ !!!

## ଲକ୍ଷ୍ମୀମନ୍ଦିର :—

ସେଠାରୁ ଯିବାକୁ ହେବ ଲକ୍ଷ୍ମୀମନ୍ଦିର । ଐତିହାସିକ ଗବେଷଣାରୁ ଜଣାଯାଉଛି, ଓଡ଼ିଶାରେ ଗଙ୍ଗ ରାଜବଂଶର ପ୍ରତିଷ୍ଠାତା ସ୍ୱନାମଧନ୍ୟ ଚୋଡ଼ଗଙ୍ଗ ଦେବ ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ

ଲକ୍ଷ୍ମୀମନ୍ଦିର ନିର୍ମାଣ କରିଥିଲେ । ପୁରୀ ଦେଉଳରେ ଯେପରି ଚୂନର ପ୍ରଲେପ ଦିଆଯାଇଛି, ଲକ୍ଷ୍ମୀଙ୍କ ମୁଖ୍ୟ ମନ୍ଦିର ଉପରେ ମଧ୍ୟ ସେପରି ଚୂନ ପ୍ରଲେପ ଦିଆଯାଇଥିଲା । ତେଣୁ ମନ୍ଦିର ଦେହର କାରୁକାର୍ଯ୍ୟ ବାହାରକୁ ଦେଖାଯାଉନଥିଲା । ମାତ୍ର ୧୯୭୫ ମାର୍ଚ୍ଚ ମାସରେ ଭାରତ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ଚୂନ ବୋଳ ବାହାର କରିଦିଆଯାଇଥିଲା । ଫଳରେ ସୁନ୍ଦର ସୁନ୍ଦର ମୂର୍ତ୍ତିମାନ ଲୋକଲୋଚନକୁ ସେହି ସମୟରୁ ହିଁ ଆସିଯାଇଛି ।

ଲକ୍ଷ୍ମୀ ଧନର ଅଧିଷ୍ଠାତ୍ରୀ ଦେବୀ ହୋଇଥିବାରୁ ତାଙ୍କ ମନ୍ଦିରରେ ଭାରି ଭିଡ଼ ହୁଏ । ଲକ୍ଷ୍ମୀମନ୍ଦିର ଭିତରେ ପଶିଲା ବେଳକୁ ଦ୍ୱାରର ବାମପାର୍ଶ୍ୱରେ (ପ୍ରାୟ ୪ଫୁଟ ଉଚ୍ଚରେ) ଲକ୍ଷ୍ମୀନୃସିଂହ ମୂର୍ତ୍ତି ଦେଖିବାକୁ ମିଳେ । ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଦଣ୍ଡୀ ସନ୍ନ୍ୟାସୀ ବେଶରେ ଦର୍ଶକର ଡାହାଣ ପଟକୁ ଓ ଦେବତାଙ୍କ ପାଦତଳେ ଠିଆ ହୋଇଛନ୍ତି ।

ପରମ୍ପରାରେ ଶୁଣାଯାଏ ଯେ, ଶଙ୍କରାଚାର୍ଯ୍ୟ ନବମ ଶତାବ୍ଦୀର ପ୍ରଥମ ପାଦରେ ପୁରୀକୁ ଆସି ତାଙ୍କର 'ଗୋବର୍ଦ୍ଧନ ପୀଠ' ସ୍ଥାପନ କଲାବେଳେ ଲକ୍ଷ୍ମୀମନ୍ଦିର ଜାଗାରେ ଲକ୍ଷ୍ମୀନୃସିଂହ ପୂଜା ପାଉଥିଲେ ଏବଂ ଏଠାରେ ଥାଇ ଶଙ୍କର ତାଙ୍କର ବିଖ୍ୟାତ ସ୍ତୋତ୍ର "ସଙ୍କଟନାଶନ ଲକ୍ଷ୍ମୀନୃସିଂହସ୍ତୋତ୍ରମ୍" ଲେଖିଥିଲେ । ଏବେ ମଧ୍ୟ ସଙ୍କଟ ସମୟରେ ପ୍ରତିକାର ପାଇଁ ସମଗ୍ର ଭାରତର ପଣ୍ଡିତମାନେ ଏହି ସ୍ତୋତ୍ର ପାଠ କରିଥାନ୍ତି ।

ଲକ୍ଷ୍ମୀଙ୍କୁ ଦେଖିସାରିବାପରେ ମନ୍ଦିରର ଜଗମୋହନରେ ଟିକିଏ ବସିବାକୁ ହୁଏ । ବର୍ତ୍ତମାନ୍ ୨୪ ଘଣ୍ଟା ଅଖଣ୍ଡ ଭାବରେ ସେଠାରେ

ଯେଉଁ ପବନ-ପ୍ରବାହ ଅନୁଭୂତ ହୁଏ, ତାହା ଏକାବେଳକେ ବିସ୍ମୟକର । ସମୁଦ୍ରକୂଳ ସ୍ୱର୍ଗଦ୍ୱାର, ବଡ଼ଦେଉଳ ଉପରେ ଟୋକା ନଥିଲ, ଅଥଚ ଲକ୍ଷ୍ମୀମନ୍ଦିରରେ ମୃଦୁ ହିଲ୍ଲୋଳ ଅବଶ୍ୟ ଅନୁଭୂତ ହେବ ।

ଏ ସମ୍ପର୍କରେ ଗୋଟିଏ ଗଳ୍ପ ଅଛି । ଲକ୍ଷ୍ମୀ ସମୁଦ୍ରଙ୍କର ଝିଅ ଏବଂ ଜଗନ୍ନାଥ ( ବିଷ୍ଣୁ ) ସମୁଦ୍ରଙ୍କର ଜ୍ୱାଇଁ । ସେ କାଳରେ ବିଜୁଳି ପଙ୍ଖା ତ ନ ଥିଲ; ଅଥଚ ସମୁଦ୍ରର ଲୁଣିଆ ପବନ ବାଜି ଦେହଟା ଅଠା-ଅଠା ଲଗୁଥିଲ । ତେଣୁ ଜଗନ୍ନାଥ କୁଆଡେ଼ ଲକ୍ଷ୍ମୀଙ୍କୁ ଦିନେ କହିଲେ—"ତୁମ ବାପାଙ୍କୁ କହିବ, ଏମିତି ଯଦି ଗୁଳୁଗୁଳିରେ ମତେ ହଇରାଣ କରନ୍ତି, ତମକୁ ତମ ବାପଘରକୁ ପଠାଇଦେବି ।" ଲକ୍ଷ୍ମୀ ଡରି ମରି ବାପା ସମୁଦ୍ରଙ୍କୁ ଏକଥା ଜଣାଇବାରୁ ସେ ଝିଅକୁ କହିଲେ—"ଆଲୋ ଝିଅ ! ଗ୍ରହମାନଙ୍କର ସଂଖ୍ୟା ନଅ ବୋଲି କୁହାଯାଏ, ମାତ୍ର 'ଜାମାତା ଦଶମ ଗ୍ରହଃ' —ଜ୍ୱାଇଁ ହେଉଛି ଦଶମ ଗ୍ରହ । ତେଣୁ 'ଗ୍ରହପୀଡ଼ା' ସେ ନିଶ୍ଚୟ ଦେବେ । ତେବେ ଶ୍ରୀମାନ୍ ଜଗନ୍ନାଥଙ୍କୁ କହିବୁ, ଆଜିଠାରୁ ସବୁବେଳେ ଶୀତଳ ପବନର ପ୍ରବାହ ତାଙ୍କୁ ଆରାମ ଦେବା ପାଇଁ ତ ସବୁବେଳେ ବହିବ, ମାତ୍ର ତାଙ୍କର ଦେଉଳ ଭିତରେ ନୁହେଁ,— ତୋର ମନ୍ଦିର ବାଟେ ବହିବ । ତୋର ମନ୍ଦିରକୁ ଆସି ସେ ସେଇ ସ୍ୱଚ୍ଛ ପବନ ଭୋଗ କରିବେ ।" ଧନ୍ୟ ଗଳ୍ପକାରଙ୍କର ଚତୁରୀ ଏବଂ ଧନ୍ୟ ମଧ୍ୟ ମନ୍ଦିର-ନିର୍ମାଣୀଙ୍କର ଗଠନ-କୌଶଳ— ଯେଉଁ ଯତରେ, ଲକ୍ଷ୍ମୀଙ୍କ ଜଗମୋହନରେ ସବୁବେଳେ ପବନର ପ୍ରବାହ ଅନୁଭୂତ ହୁଏ ।

## ବଡ଼ ଦେଉଳରେ ପ୍ରବେଶ :--

ଏଠାରେ କହି ରଖିବା ଦରକାର ଯେ, ଲିଙ୍ଗରାଜ ମନ୍ଦିର ପରି ଜଗନ୍ନାଥ ମନ୍ଦିର ମଧ୍ୟ ଚାରି ଭାଗରେ ବିଭକ୍ତ । ଭାଗଗୁଡ଼ିକ ପୂର୍ବରୁ ପଶ୍ଚିମକୁ ।

(କ) **ଭୋଗମଣ୍ଡପ**—ଏହି ପ୍ରଶସ୍ତ କକ୍ଷରେ ମହାପ୍ରସାଦ ଭୋଗ ହୁଏ ।

(ଖ) **ନାଟମନ୍ଦିର** :—ଏହାର ଭିତରେ ଗରୁଡ଼ଖମ୍ବ ରହି-ଅଛି ଏବଂ ବିଭିନ୍ନ ଖମ୍ବ, କାନ୍ଥ, ବାଡ଼ ଚାରିଆଡ଼େ ବିଷ୍ଣୁ କୃଷ୍ଣଙ୍କର ବିବିଧ ଲୀଳା ସୁନ୍ଦର ଭାବେ ଚିତ୍ରିତ ହୋଇଅଛି । ଗରୁଡ଼ଖମ୍ବର ପଛ ପଟେ କାନ୍ଥଦେହରେ କାଞ୍ଚି-ଅଭିଯାନର ଯେଉଁ ସବୁ ମୂର୍ତ୍ତି ଅଛି (ଘୋଡ଼ା ଉପରେ ବସିଥିବା ଜଗନ୍ନାଥ ଏବଂ ବଳଭଦ୍ର, ପୁଣି ମାଣିକ ଗଉଡ଼ଣୀ ଓ ବ୍ରହ୍ମାମୂର୍ତ୍ତି) ଶିଳ୍ପୀର ଅପୂର୍ବ ସିଦ୍ଧହସ୍ତତା ତହିଁରେ ଫୁଟିଉଠିଛି ।

ଗରୁଡ଼ଖମ୍ବ ପଛପଟେ ଠିଆହୋଇ ଦୁଇ ହାତରେ ଖମ୍ବକୁ କୁଣ୍ଢାଇବାକୁ ହୁଏ । ସେହି ପଥରର ବ୍ୟାଧି-ବିନାଶକ ଗୁଣ ଅଛି ବୋଲି ଲୋକେ ବିଶ୍ୱାସ କରନ୍ତି । ଶହ ଶହ ବର୍ଷ ଧରି ଲକ୍ଷ ଲକ୍ଷ ଲୋକ ତାକୁ କୁଣ୍ଢାଇବା ଫଳରେ ମଝି ଅଂଶଟି କପରି ସରୁଆ ହୋଇଯାଇଛି, ଦେଖିବାର କଥା ।

(ଗ) **ଜଗମୋହନ** :– ନାଟମନ୍ଦିରରୁ ଜଗମୋହନ (ବା ମୁଖଶାଳା) ଭିତର ଦେଇ ଜଗନ୍ନାଥଙ୍କ ରତ୍ନବେଦୀ ପାଖକୁ ଯିବାକୁ ହୁଏ । ଜଗମୋହନକୁ ମୁଖଶାଳା ମଧ୍ୟ କହନ୍ତି । ଜଗମୋହନର ଦ୍ୱାରର ଦୁଇ ପଟେ ଯେଉଁ ସୁନ୍ଦର କାରୁକାର୍ଯ୍ୟ ଅଛି, ତାହା ଉପଭୋଗ କରିବାର କଥା ।

ପୂର୍ବ ଦେଉଳର ପ୍ରାପ୍ତ ଶହେ ବର୍ଷ ଭିତରେ ତିଆରି ହୋଇଥିବା କୋଣାର୍କ ମନ୍ଦିର–ଜଗମୋହନର ଦ୍ୱାରର ଦୁଇପଟେ କିପରି ପୁରୀର ଜଗମୋହନ ଦ୍ୱାରସ୍ଥିତ କାରୁକାର୍ଯ୍ୟର ଅନୁକରଣ କରାଯାଇଅଛି, କଳାପ୍ରେମୀମାନେ ତାକୁ ଲକ୍ଷ୍ୟ କରିଥାଆନ୍ତି ।

(ଘ) **ବଡ଼ ଦେଉଳ**—ବଡ଼ ଦେଉଳକୁ ଗର୍ଭଗୃହ (ବା ବିମାନ) କୁହାଯାଏ । ବଡ଼ ଦେଉଳରେ (ଡାହାଣରୁ ବାମକୁ) ଜଗନ୍ନାଥ, ସୁଭଦ୍ରା ଏବଂ ବଳଭଦ୍ର ବିଜେ କରିଛନ୍ତି । ଜଗନ୍ନାଥ ଏବଂ ବଳଭଦ୍ରଙ୍କର ମୁଣ୍ଡରେ ଯେଉଁ ହୀରା ଓ ନୀଳା ଶୋଭା-ପାଉଛି, ତାହାର ମୂଲ୍ୟ ସାଧାରଣ ଲୋକ କଳନା କରିପାରିବ ନାହିଁ ।

କଥା ଅଛି ଯେ, ବିଦ୍ୟାପତିଙ୍କଠାରୁ (ନୀଳାଚଳ କନ୍ଦରାରେ ଶବର ରାଜା ବିଶ୍ୱାବସୁ ଗୋପନରେ ପୂଜା କରୁଥିବା) ନୀଳ-ମାଧବଙ୍କର ଖବର ପାଇ ମାଳବରାଜା ଇନ୍ଦ୍ରଦ୍ୟୁମ୍ନ ତାଙ୍କୁ ଦେଖିବା ପାଇଁ ଆସିବା ବେଳକୁ ସେ କୁଆଡ଼େ ଉଭେଇଗଲେ । ପରେ ରାଜା ସ୍ୱପ୍ନ ଦେଖିଥିବା ପ୍ରକାରେ ସମୁଦ୍ରରେ ଭାସୁଥିବା ଦିବ୍ୟ ଦାରୁ (କାଠ) ଆଣି, ବିଷ୍ଣୁଙ୍କ ମୂର୍ତ୍ତି ନିର୍ମାଣ କରିବା ପାଇଁ ଚେଷ୍ଟା କଲେ । ମାତ୍ର ବିଷ୍ଣୁଙ୍କ କେହି ଆଖିରେ ନ ଦେଖିଥିବାରୁ ତାଙ୍କ

ମୂର୍ତ୍ତି କେହି ଗଢ଼ିପାରିଲେ ନାହିଁ । ଭକ୍ତପ୍ରବର ମହାରାଜାଙ୍କର ଆକୁଳ ପ୍ରାର୍ଥନାରେ ମହାପ୍ରଭୁ ସନ୍ତୁଷ୍ଟ ହୋଇ ନିଜେ ବଢ଼େଇ ରୂପରେ ଆସି ପହଞ୍ଚିଗଲେ । ଘର୍ଦ୍ଧ ଏକୋଇଶ ଦିନ ଧରି ଏକୁଟିଆ ରୁଦ୍ଧଗୃହରେ ରହି ସେ ପୁରୁଷୋତ୍ତମଙ୍କ ମୂର୍ତ୍ତି ନିର୍ମାଣ କରିବା ପାଇଁ ସ୍ଥିର ହେଲା । ମାତ୍ର ପନ୍ଦର ଦିନ ପରେ କୋମଳହୃଦୟା ରାଣୀଙ୍କ ପରାମର୍ଶ କ୍ରମେ (ମହାରାଣୀଙ୍କର ଜୀବନ ରକ୍ଷା ଲାଗି) କବାଟ ଖୋଲିଦିଆଗଲା । ଖୋଲିବା ପରେ ଦେଖାଗଲା, ମୂର୍ତ୍ତିଗୁଡ଼ିକ ବର୍ତ୍ତମାନ ଆମେ ଦେଖୁଥିବା ଅବସ୍ଥାରେ ଅଛନ୍ତି ଓ ମହାରଣା ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି । ସେହିଦିନଠୁ ଏଭଳି ଅପୂର୍ଣ୍ଣ ମୂର୍ତ୍ତି ପୂଜା ପାଉଛନ୍ତି ।

ପୁରାଣମାନଙ୍କରୁ ଆହୁରି ମଧ୍ୟ ଜଣାଯାଏ, ଆଜି ଯେଉଁ-ଠାରେ ଗୁଣ୍ଡିଚା ଘର ଅଛି, ସେହି ଜାଗାରେ ମୂର୍ତ୍ତିଗୁଡ଼ିକ ପ୍ରଥମେ ନିର୍ମିତ ହୋଇଥିଲେ ଏବଂ ସେଠାରେ ଏକ ମନ୍ଦିରରେ ପ୍ରତିଷ୍ଠିତ ହୋଇଥିଲେ । ପରେ, ନୀଳଗିରି ପାହାଡ଼ ଉପରେ ବଡ଼ ମନ୍ଦିର ତିଆରି କରାଯାଇ ମୂର୍ତ୍ତିମାନଙ୍କୁ ଅଣାଗଲା । ଅନ୍ୟ ଭାବରେ କହିଲେ, ବର୍ତ୍ତମାନ ବଡ଼ ଦେଉଳ ଯେଉଁଠାରେ ଠିଆହୋଇଛି, ତାହାହିଁ ନୀଳଗିରି ପାହାଡ଼ ଏବଂ ଥରକୁ ଥର ତା ଉପରେ ଭିନ୍ନ ଭିନ୍ନ ରାଜା ମନ୍ଦିରମାନ ନିର୍ମାଣ କରିଥିଲେ । ପୁଣି ଆଜିର ଏହି ବିରାଟ ମନ୍ଦିର ଚୋଡ଼ଗଙ୍ଗ ଦେବଙ୍କଦ୍ୱାରା ଆରମ୍ଭ ହୋଇ ଦ୍ୱାଦଶ ଶତାବ୍ଦୀର ଶେଷଭାଗ ବେଳକୁ ଅନଙ୍ଗଭୀମଙ୍କଦ୍ୱାରା ପୂର୍ଣ୍ଣତା ଲାଭ କରିଥିଲା ।

## ଗୃହବେଷ୍ଟି ଯାକ ଭାଗ ଏକ କାଳର ନୁହେ :—

ଆଜି ବଡ଼ ଦେଉଳ କହିଲେ ଗର୍ଭଗୃହଠାରୁ ଭୋଗମଣ୍ଡପ ପର୍ଯ୍ୟନ୍ତ ଗୃହବେଷ୍ଟିଯାକ ଭାଗ ବୋଲି ଆମେ ବୁଝିଥାଉ । କିନ୍ତୁ ଗର୍ଭଗୃହ ଓ ଜଗମୋହନ ନିର୍ମିତ ହେବାର କେତେ ଶହ ବର୍ଷ ପରେ ନାଟମନ୍ଦିର ଓ ଭୋଗମଣ୍ଡପ ନିର୍ମିତ ହୋଇଥିଲା ।

ନାଟମନ୍ଦିରରେ ରାତି ଅଧବେଳକୁ ଏବଂ ଜଗନ୍ନାଥେ ନିଦ୍ରା-ଯିବା ବେଳକୁ ମାହାରୀ-ନାଚର ପରିବେଷଣ ହେଉଛି ପ୍ରାଚୀନ ବିଧି । ଲଳିତ୍ୟପୂର୍ଣ୍ଣ ଏହି ମାହାରୀ ନାଚ ଆଜି 'ଓଡ଼ିଶୀ ନୃତ୍ୟ' ନାମରେ ସାରା ପୃଥିବୀରେ ପରିଚିତ ଓ ଅଦୃତ ହୋଇ ଉଠିଲାଣି । ବିଶ୍ୱ କଳାକ୍ଷେତ୍ରକୁ କଳାସାଧକ ଓଡ଼ିଆ ଜାତିର ଏହା ହେଉଛି ଏକ ଉଲ୍ଲେଖଯୋଗ୍ୟ ଅବଦାନ । ଗତ କେତେ ଶତାବ୍ଦୀ ଧରି ଓଡ଼ିଆ ପୁଅ ଜୟଦେବଙ୍କର ଗୀତଗୋବିନ୍ଦ ପ୍ରତିରାତିରେ ଜଗନ୍ନାଥଂକ ଉପଭୋଗ ନିମନ୍ତେ ମାହାରୀନାଚ ସହିତ ପରିବେଷିତ ହୋଇଆସୁଛି ।

## ଦିଅଁ ଦେଖାପରେ 'ଆନନ୍ଦ ବଜାର' :—

ମହାପ୍ରଭୁଙ୍କୁ ଦେଖିସାରି 'ଆନନ୍ଦ ବଜାର'କୁ ଯିବାକୁ ହୁଏ । ଯିବା ପୂର୍ବରୁ ଭୋଗମଣ୍ଡପର ଉତ୍ତର-ପୂର୍ବ କୋଣରେ, ମନ୍ଦିର ଅଫିସ୍ ଦ୍ୱାରରେ, ଟିକଏ ଠିଆହେଲେ ଗୋଟିଏ ବିଚିତ୍ର କଥା ଆଖିରେ ପଡ଼େ । ଆପଣ ବଡ଼ ଦେଉଳ ଆଡ଼କୁ ମୁହଁକରି ଠିଆହେଲେ ଦେଉଳ ଉପରର ନୀଳଚକ୍ର ଉପରେ ତ ଦୃଷ୍ଟି

ପଡ଼ିବ, ତା ସହିତ ସେଇ ଜାଗାରେ ଠିଆହୋଇ ଡାହାଣକୁ ଚାହିଁଲେ ଲକ୍ଷ୍ମୀମନ୍ଦିର ଭିତରେ ଲକ୍ଷ୍ମୀଙ୍କ ମୂର୍ତ୍ତି ଦିଶିବ ଏବଂ ବାମପଟକୁ ସତ୍ୟନାରାୟଣ ମନ୍ଦିରକୁ ଚାହିଁଲେ, ପ୍ରକାଣ୍ଡକାୟ ଶାଳଗ୍ରାମ ଶିଳାରେ ନିର୍ମିତ ନାରାୟଣଙ୍କର ମୂର୍ତ୍ତି ମଧ୍ୟ ଦେଖାଯିବ । ସେହି ଗୋଟିକ ଜାଗାରୁ ନୀଳଚକ୍ର ଏବଂ ଲକ୍ଷ୍ମୀ ତଥା ନାରାୟଣଙ୍କ ମୂର୍ତ୍ତି ଦେଖି ଯାତ୍ରୀମାନେ ଖୁବ୍ ପାଖରେ ଥିବା ଆନନ୍ଦବଜାରକୁ ଯାଆନ୍ତି ।

## ଦେଉଳ ବେଢ଼ା ଭିତରେ ଆଉ କେତୋଟି ଦେଖିବାର ଜିନିଷ

ଆପଣଙ୍କର ଯଦି ସମୟ ଥାଏ, ଦେଉଳ ବେଢ଼ା ଭିତରେ ଥିବା ବହୁ ଜିନିଷ ଭିତରୁ ଏହି କେତୋଟି ଦେଖିପାରନ୍ତି—

### (୧)କଳ୍ପବଟ :—

ଆଗରୁ କୁହାଯାଇଛି, ଏଇ ବଟଗଛ ମୂଳେ ଗଣେଶ ମନ୍ଦିର ଅବସ୍ଥିତ । କିନ୍ତୁ ଏଇ କଳ୍ପବଟ ମଧ୍ୟ ମର୍ତ୍ତ୍ୟର କଳ୍ପଦ୍ରୁମ ବୋଲି ବିଶ୍ୱାସ କରାଯାଏ । କଳ୍ପଦ୍ରୁମ ବା କଳ୍ପବୃକ୍ଷ ସ୍ୱର୍ଗରେ ଅଛି ବୋଲି ପୁରାଣରେ ବର୍ଣ୍ଣିତ ଏବଂ ସେ ପ୍ରାର୍ଥୀମାନଙ୍କର କାମନା ପୂର୍ଣ୍ଣ କରେ ବୋଲି ମଧ୍ୟ କଥିତ । ତେଣୁ ଯାତ୍ରୀମାନେ ଏଇ ବଟଗଛକୁ ସେଇ ଜ୍ଞାନକରି, ତାର ମୂଳରେ ନିଜନିଜର ଅଭାବ ପୂରଣ କରିବାକୁ ତାକୁ ନିବେଦନ କରିଥାଆନ୍ତି । ନାରୀମାନେ ପୁତ୍ର କାମନାରେ ମଧ୍ୟ ତାକୁ ପ୍ରାର୍ଥନା କରିଥାଆନ୍ତି ।

କିନ୍ତୁ ସବୁଠାରୁ ବଡ଼ କଥା ହେଉଛି, ଏହାର ଐତିହାସିକ ବିଶେଷତ୍ୱ। ନାନା ଗ୍ରନ୍ଥରୁ ଜଣାଯାଏ, ଓଡ଼ିଆ ଭାଗବତର ଲେଖକ, ସାଧକପ୍ରବର ଜଗନ୍ନାଥ ଦାସ ଏହି ବଟଗଛ ମୂଳେ ବସି ପ୍ରତିଦିନ ସଂସ୍କୃତ-ଭାଗବତ ଅର୍ଥ କରୁଥିଲେ ଏବଂ ଓଡ଼ିଆ ପଦ୍ୟରେ ତାହାର ଅନୁବାଦ କରୁଥିଲେ । ଏହିଠାରେ ଚୈତନ୍ୟଦେବ ଜଗନ୍ନାଥ ଦାସଙ୍କର ଭକ୍ତି ଓ ପାଣ୍ଡିତ୍ୟରେ ବିମୁଗ୍ଧ ହୋଇ ତାଙ୍କୁ 'ଅତିବଡ଼' ଉପାଧି ପ୍ରଦାନ କରିଥିଲେ । ଓଡ଼ିଆ ଜାତି ଏବଂ ଶ୍ରୀମନ୍ଦିର ଚିରକାଳ ମୈତ୍ରୀ ଏବଂ ସାମ୍ୟ ପ୍ରତିଷ୍ଠାର ପ୍ରତୀକ । ଭେଦଭାବ ଦୂର ନ ହେଲେ ସାମ୍ୟ ପ୍ରତିଷ୍ଠା ହୋଇପାରିବ ନାହିଁ । ସାମ୍ୟ ନ ଥିଲେ ମୈତ୍ରୀ କଦାପି ସମ୍ଭବ ହେବ ନାହିଁ ।

ଏକଥା ସମସ୍ତେ ଜାଣନ୍ତି ଯେ ନବମ ଶତାବ୍ଦୀରେ ଶଙ୍କରାଚାର୍ଯ୍ୟ 'ଅଦ୍ୱୈତବାଦ' ପ୍ରଚାରକଲେ । ଏହି ଦାର୍ଶନିକ ମତବାଦର ସାରକଥା ହେଲା, ମନୁଷ୍ୟଠାରେ ଥିବା ଜୀବାତ୍ମା ଏବଂ ସର୍ବବ୍ୟାପକ ପରମାତ୍ମା ଏକ ଓ ଅଭିନ୍ନ । କିନ୍ତୁ ମଧ୍ୱ ପ୍ରଭୃତି ଦାର୍ଶନିକମାନେ ଦ୍ୱୈତବାଦ ପ୍ରଚାରକଲେ, ଅର୍ଥାତ୍, ସେମାନେ କହିଲେ ଜୀବାତ୍ମା ଓ ପରମାତ୍ମା ସବୁବେଳେ ଭିନ୍ନ (ଦ୍ୱୈତ) ଏବଂ ଆଦୌ ଏକ ହୋଇ ନ ପାରନ୍ତି । ଫଳରେ ଭାରତବର୍ଷରେ ଘୋରତର ମାନସିକ ଆନ୍ଦୋଳନ, ମତଭେଦ, ମତାନ୍ତର, ତଥା ମନାନ୍ତର ମଧ୍ୟ ଆତ୍ମପ୍ରକାଶ କଲା ! ସମନ୍ୱୟବାଦୀ ଓଡ଼ିଆ ଜାତିର ଯୋଗ୍ୟତମ ସନ୍ତାନ ଜଗନ୍ନାଥଙ୍କର ସାମ୍ୟ ଓ ମୈତ୍ରୀର ପତାକା ତଳେ ବସି ଏହି କଳି କନ୍ଦଳକୁ ବରଦାସ୍ତ କରିପାରିଲେ ନାହିଁ । ତେଣୁ ଏହି ବଟଗଛ ମୂଳେ ବସି ସେ ପ୍ରଚାରକଲେ 'ଅଦ୍ୱୈତ-

ବାଦ (ଅଭେଦ-ବାଦ) ଠିକ୍ ଓ ଦ୍ୱୈତବାଦ (ଭେଦ ବାଦ) ମଧ୍ୟ ଠିକ୍; କିନ୍ତୁ ତାକୁ ଅଲଗା ଦୃଷ୍ଟିରୁ ଦେଖିବାକୁ ହେବ । ଅନ୍ୟ ଭାବରେ କହିଲେ, ଶଙ୍କର ଯାହା କହିଛନ୍ତି ତାହା ଠିକ୍ ଏବଂ ମଧ୍ୱ ଯାହା କହିଛନ୍ତି, ତାହା ମଧ୍ୟ ଠିକ୍ । କିନ୍ତୁ ତାହା ଅଚିନ୍ତନୀୟ । ତାକୁ ଚିନ୍ତା କରିଯାଇପାରିବ ନାହିଁ ।" ଏଥିରୁ ବାହାରିଲା 'ଅଚିନ୍ତ୍ୟ ଭେଦାଭେଦ' । ଚୈତନ୍ୟଙ୍କ ମାଧ୍ୟମରେ ବଙ୍ଗଳାର ପଣ୍ଡିତମାନେ ଏହି ମତବାଦଟିକୁ ବେଶ୍ ପ୍ରଚାରକଲେ । କିନ୍ତୁ ଖ୍ରୀ ୧୭୩୦ ପରେ ରାଜସ୍ଥାନର ଏକ ସହରରେ ଯେଉଁ ବଡ଼ ଧରଣର ଧର୍ମସଭା ହୋଇଥିଲା, ତହିଁରେ ସେମାନେ ହାରିଗଲେ । ଭାରତର ଦାର୍ଶନିକ ପଣ୍ଡିତମାନେ କହିଲେ, "ଆପଣମାନେ ଏଭଳି ମନ୍ଗଢ଼ିଆ ମତବାଦ ଖାଲି ତ କହିଲେ ଚଳିବ ନାହିଁ, ସେଥିପାଇଁ ବ୍ରହ୍ମସୂତ୍ର ଉପରେ ଭାଷ୍ୟ ଦରକାର, ଯାହା କି ଶଙ୍କର ଓ ମଧ୍ୱ କରିଯାଇଛନ୍ତି ।" ଏହି ମତବାଦୀ ପଣ୍ଡିତମାନଙ୍କ ମଧ୍ୟରେ ଭାଳେଣି ପଡ଼ିଗଲା । ସେତିକିବେଳେ ଓଡ଼ିଶାର ପଣ୍ଡିତ ବଳଦେବ ବିଦ୍ୟାଭୂଷଣ ସେହି ସଭାରେ ପାଟିକରି କହିଲେ, "ହଁ" ବ୍ରହ୍ମସୂତ୍ର ଉପରେ ଏ ଦୃଷ୍ଟିରୁ ଭାଷ୍ୟ ଲେଖାଯାଇଛି ।" ଅଳ୍ପ କାଳ ଭିତରେ ସେ ନିଜେ ଭାଷ୍ୟ ଲେଖି ସମଗ୍ର ଭାରତବର୍ଷକୁ ବିସ୍ମୟରେ ଅଭିଭୂତ କରିଦେଲେ । ବଳଦେବଙ୍କର 'ଗୋବିନ୍ଦ ଭାଷ୍ୟ' ଭାରତୀୟ ଦାର୍ଶନିକ ସାହିତ୍ୟରେ ଉଚ୍ଚ ଆସନ ଅଧିକାର କରେ । ବଡ଼ ଦେଉଳର ଏଇ ବଟଗଛ ମୂଳେ ଯେହେତୁ ଓଡ଼ିଆ ପ୍ରାଣରୁ ଏଭଳି ଏକ ଭାରତବିଖ୍ୟାତ ଦାର୍ଶନିକ ମତବାଦ ଜନ୍ମଲାଭ କରିଥିଲା, ତାକୁ ଥରେ ଦେଖି, ତାହାର ପାଦଦେଶରେ ମୁଣ୍ଡ ନୁଆଁଇବାକୁ ଭାବୁକ ଓ ତୀର୍ଥଯାତ୍ରୀମାନେ ଆଦୌ କୁଣ୍ଠିତ ହୁଅନ୍ତି ନାହିଁ ।

## (୨) କୁତାମ୍ ଚଣ୍ଡୀମନ୍ଦିର :—

ଅନେକ ପଣ୍ଡିତ କହିଯାଇଛନ୍ତି, ଜଗନ୍ନାଥ, ବଳଭଦ୍ର ସୁଭଦ୍ରା ହେଉଛନ୍ତି ବୈଷ୍ଣବ ଧର୍ମ, ଶୈବ ଧର୍ମ ଏବଂ ଶାକ୍ତ ଧର୍ମର ପ୍ରତୀକ । ଭାରତୀୟମାନେ ଯଦିଓ ତେତିଶ କୋଟି ଦେବତା ମାନନ୍ତି, ତଥାପି ଶହ ଶହ ବର୍ଷ ଧରି ଉପରଲିଖିତ ତିନୋଟି ମୁଖ୍ୟ ଧର୍ମଧାରା ଭାରତ-ଭୂମିରେ ସୁପ୍ରତିଷ୍ଠିତ ହୋଇଥିବାର ଦେଖାଯାଏ । ଏ ମଧ୍ୟରୁ ପ୍ରତ୍ୟେକଟିର ନାନା ଶାଖା-ପ୍ରଶାଖା ମଧ୍ୟ ରହିଅଛି ।

ଏ ଦୃଷ୍ଟିରୁ ତିନି ଦେବତା ତିନି ଧର୍ମର ପ୍ରତୀକ ।

ଅନ୍ୟ ଭାବରେ ଦେଖିଲେ, ଖୋଦ୍ ଜଗନ୍ନାଥଙ୍କୁ ମଧ୍ୟ ଭୈରବ (ଶିବ) ରୂପେ ଏବଂ କାଳିକା (ଶକ୍ତି) ରୂପେ ବର୍ଣ୍ଣନା କରାଯାଏ । କୁହାଯାଇଛି—

(କ) ବିମଳା ଭୈରବୀ ଯତ୍ର
ଜଗନ୍ନାଥସ୍ତୁ ଭୈରବଃ

(ଖ) ଶ୍ରୀକ୍ଷେତ୍ରେ ତୁ ଜଗନ୍ନାଥଃ
ସ୍ୱୟଂ ଦକ୍ଷିଣକାଳିକା ।

ଅର୍ଥାତ୍, ଜଗନ୍ନାଥହିଁ ଭୈରବ ଏବଂ ବିମଳା ହେଉଛନ୍ତି ଭୈରବୀ । ପୁଣି ନିଜେ ଜଗନ୍ନାଥ ମଧ୍ୟ ଦକ୍ଷିଣକାଳିକା ଅଟନ୍ତି ।

ଜଗନ୍ନାଥଙ୍କୁ ଭୈରବ ରୂପେ ପୂଜା କରାଯିବାରୁ ଭୈରବଙ୍କଠାରେ ବଳ ବଢ଼ାଇବା ପାଇଁ ଶ୍ରୀମନ୍ଦିରରେ କୁକୁର ସ୍ଥାପିତ ହୋଇଥିଲା । ବଟଗଣେଶ ମନ୍ଦିରକୁ ଲାଗି ଉତ୍ତରପଟକୁ ଯେଉଁ ଗ୍ରେଟ ଦେଉଳଟି ଅଛି, ତାହାର କାନ୍ଥରେ ଏବଂ ପାଖ ଗ୍ରେଟିଆ ମନ୍ଦିରରେ କୁକୁର ଦେଖିଲେ ବୈଷ୍ଣବମାନେ ଆଶ୍ଚର୍ଯ୍ୟ ହେବେ, କାରଣ ଖୋଦ୍ ବିଷ୍ଣୁ ମନ୍ଦିରରେ କୁକୁର ମୂର୍ତ୍ତି ସ୍ଥାପନା ଅସମ୍ଭବ । ସୁତରାଂ, ବୈଷ୍ଣବ ଓ ଶୈବଧର୍ମ ମଧ୍ୟରେ ଏକାନ୍ତ ସଦ୍‌ଭାବ ବା ସମନ୍ୱୟ ପ୍ରତିଷ୍ଠାର ଏହା ଏକ ପ୍ରମାଣ ।

## (୩) ମୁକ୍ତିମଣ୍ଡପ ସଭା :—

କୁହାମ୍ ଚଣ୍ଡୀମନ୍ଦିରକୁ ଲାଗି 'ମୁକ୍ତିମଣ୍ଡପ' । ପୂର୍ବ କାଳରେ ଷୋଳଟି ଶାସନର ବଡ଼ ବଡ଼ ବ୍ରାହ୍ମଣ ପଣ୍ଡିତମାନଙ୍କୁ ନେଇ ଓଡ଼ିଶାର ରାଜାମାନେ ଯେଉଁ ପରିଷଦ ଗଠନ କରିଥିଲେ, ଏହା ସେମାନଙ୍କର ପୀଠ । ହୁଏତ ଏହାର ଅନୁକରଣରେ ଆସାମ ରାଜ୍ୟରେ 'ମୁକ୍ତିମଣ୍ଡପିକା' ପ୍ରତିଷ୍ଠିତ ହୋଇଥିଲା । ଓଡ଼ିଶାର ତଥା ଭାରତର ବଡ଼ ବଡ଼ ଧାର୍ମିକ ସମସ୍ୟା ଉପରେ ଲୋକେ ଏହି ମୁକ୍ତିମଣ୍ଡପ ସଭାର ପରାମର୍ଶ ଲୋଡ଼ିଥାନ୍ତି ।

## (୪) ରୋହିଣୀକୁଣ୍ଡ :—

ମୁକ୍ତିମଣ୍ଡପଠୁ ବିମଳାମନ୍ଦିର ଆଡ଼କୁ ଦଶ ପନ୍ଦର ହାତ ଗଲେ 'ରୋହିଣୀକୁଣ୍ଡ' ପଡ଼େ । ପୁରାଣରେ ଅଛି ଯେ, ସେହି କୁଣ୍ଡରେ ଗୋଟିଏ କୁଆ ବୁଡ଼ିବାକୁ ପଡ଼ିଯିବାରୁ ବିଷ୍ଣୁଙ୍କ ରୂପ ଧରି

ବସ୍ତୁ ଲୋକକୁ ଚାଲିଯାଇଥିଲେ । ତେଣୁ ଏବେ ମଧ୍ୟ ଭକ୍ତମାନେ ସେ କୁଣ୍ଡର ପାଣି ନେଇ ମୁଣ୍ଡରେ ଲଗାନ୍ତି ।

କିନ୍ତୁ ସାଧାରଣ ଭ୍ରମଣକାରୀ ପକ୍ଷରେ ମଧ୍ୟ ସେଠାକାର engineering ( ନିର୍ମାଣମୂଳକ ) କୌଶଳ ବେଶ୍ ଉପଭୋଗ୍ୟ । କୁଣ୍ଡର ଦକ୍ଷିଣ ଭାଗରେ ବଡ଼ ଦେଉଳ ଆଡ଼କୁ ଆପଣ ମୁହଁକରି ଠିଆହୁଅନ୍ତୁ ଏବଂ ଆଖୀକୁ ଟିକିଏ ନୁଆଇଁ କରି ପାଣି ଭିତରକୁ ଚାହାଁନ୍ତୁ । ବଡ଼ ଦେଉଳ ଦେହରେ, ପ୍ରାୟ ଶହେ ଷାଠିଏ ଫୁଟ ଉଚ୍ଚରେ ଥିବା ଜଗନ୍ନାଥ-ବଳଭଦ୍ର-ସୁଭଦ୍ରାଙ୍କ ପ୍ରତିବିମ୍ବ ଆପଣ ସ୍ପଷ୍ଟ ରୂପରେ ପାଣି ଭିତରେ ଦେଖିପାରିବେ ।

## (୫) ଦକ୍ଷିଣ ପାର୍ଶ୍ୱ ମନ୍ଦିର :—

ରୋହିଣୀକୁଣ୍ଡଠାରୁ ବଡ଼ ଦେଉଳକୁ ଚାହିଁଲେ ପ୍ରାୟ ପନ୍ଦର ଫୁଟ ଉଚ୍ଚରେ ଗୋଟିଏ ଛୋଟିଆ ଦେଉଳ (ବଡ଼ ଦେଉଳର ଦେହରେ) ଦେଖାଯିବ । ଏହା ଦକ୍ଷିଣ ପଟର ପାର୍ଶ୍ୱ ଦେଉଳ । ସେତିକି ଉଚ୍ଚରେ ବଡ଼ ଦେଉଳ ଦେହରେ ପଶ୍ଚିମମୁଖ ହୋଇ ଗୋଟିଏ ଦେଉଳ ଏବଂ ଉତ୍ତରମୁଖ ହୋଇ ଆଉ ଗୋଟିଏ ଦେଉଳ ଅଛି । ତିନୋଟି ପ୍ରତ୍ୟେକ ଦେଉଳ ପର୍ଯ୍ୟନ୍ତ ଅଲଗା ପାହାଚଧାଡ଼ି ଅଛି । ବିଷ୍ଣୁଙ୍କର ତିନି ଅବତାରଙ୍କର ମୂର୍ତ୍ତି ଏହି ତିନି ଦେଉଳରେ ସ୍ଥାପିତ । ଏବେ ଯେଉଁ ପଶ୍ଚିମ ପାର୍ଶ୍ୱ ଦେଉଳ କଥା କୁହାଯାଉଛି, ତହିଁରେ ବିଷ୍ଣୁଙ୍କର ବରାହ ଅବତାର ମୂର୍ତ୍ତି ଅଛି; ଖଣ୍ଡିଏ କଳା ମୁଗୁନି ପଥରର ଏହି ମୂର୍ତ୍ତିର ଆଖୀ ଏବଂ

ଉଦ୍ଧରେ ସୁନା ଅଳଙ୍କାରର କୁଟିକାମ ପରି ଯେଉଁ କାରୁକାର୍ଯ୍ୟ ଫୁଟିଉଠିଛି, ତାକୁ ପ୍ରଶଂସା ନ କରି ରହିହୁଏ ନାହିଁ । ମୂର୍ତ୍ତିର ଉପରେ ଯେଉଁ ଛାତ ହୋଇଛି, ତହିଁରେ ସେ କାଳର (ଆଠଶହ ବର୍ଷ ତଳର) ଲୁହାକଡ଼ି ଦେଖିବାକୁ ମିଳେ । ଆଠଶହ ବର୍ଷଧରି ଲୁଣା ପବନ ବାଜି ମଧ୍ୟ, ତାର କଣ୍ଟି କ୍ଷୟ ହୋଇ ନାହିଁ । ଦ୍ୱାଦଶ ଶତାବ୍ଦୀରେ ଏଭଳି କଡ଼ି ଓଡ଼ିଆମାନେ ତିଆରି କରିପାରୁଥିବାରୁ ତାର ପ୍ରାୟ ଶହେ ବର୍ଷ ପରେ କୋଣାର୍କ ମନ୍ଦିରରେ ବ୍ୟବହୃତ ହୋଇଥିବା ପ୍ରାୟ ଛତିଶ ଫୁଟ ଲମ୍ବା ଓ କୁଣ୍ଡେ ମୋଟର ବିଶ୍ୱ-ବିସ୍ମୟକର ଲୁହାକଡ଼ି ତିଆରି କରିପାରିଥିଲେ । ଅନ୍ୟ ଦୁଇଟି ପାର୍ଶ୍ୱ ଦେବତା ମନ୍ଦିରର ଶିଳ୍ପକଳା ମଧ୍ୟ ଦର୍ଶନୀୟ । ତହିଁରେ ଯଥାକ୍ରମେ ନୃସିଂହ ଓ ବାମନ ଅବତାର-ମୂର୍ତ୍ତି ସ୍ଥାପିତ ।

## (୬) ବଡ଼ ଦେଉଳର ନକ୍‌ସା (Model) :—

ରୋହିଣୀକୁଣ୍ଡ ପାଖର ପ୍ରଥମ ପାର୍ଶ୍ୱମନ୍ଦିର ଦେଖିସାରି, ଦ୍ୱିତୀୟ ପାର୍ଶ୍ୱମନ୍ଦିରକୁ ଗଲାବେଳେ ବାମପଟେ ପ୍ରାୟ ପୁରୁଷେ ଉଚ୍ଚର ଗୋଟିଏ ତୁଳସୀ ଚଉରା ପରି ପଥରଖଣ୍ଡ ଦେଖିବାକୁ ମିଳେ । ଶିଳ୍ପୀମାନେ ବଡ଼ ବଡ଼ କୋଠା ବାଡ଼ ତିଆରିକରିବା ଆଗରୁ ପରିକଳ୍ପିତ କୋଠାର ଗୋଟିଏ 'ମଡେଲ୍' ତିଆରି କରନ୍ତି । ଅନେକେ ଅନୁମାନ କରନ୍ତି, ଏହି ପଥର ଖଣ୍ଡିକରେ ଥିବା ଦେଉଳ ଆକାରର ଖୋଦନ ହିଁ ପୁରା ଦେଉଳର 'ମଡ଼େଲ୍' ଥିଲା । ଏହି ଶିଳାଖଣ୍ଡଟେ ଥିବା ଉଡ଼ା ସିଂହକୁ ଆଖି ପକାଇ ବଡ଼ ଦେଉଳ ଉପରେ ଥିବା ଉଡ଼ା ସିଂହକୁ ଦେଖିଲେ ...

ଧରହେବ । ତେବେ ଏଥିର ଅଧିକ ଐତିହାସିକ ପ୍ରମାଣ ଆବଶ୍ୟକ ।

## (୭) ଭଣ୍ଡ ଗଣେଶ :—

ଏହି ପଥରଖଣ୍ଡକୁ ଲଗି ଭଣ୍ଡ ଗଣେଶ ମନ୍ଦିର । ଏ ମନ୍ଦିରର ମୂର୍ତ୍ତିଟି ଦକ୍ଷିଣ ଭାରତରୁ ଆସିଥିବାର ଜଣାଯାଏ । ଜନନୀ ପାର୍ବତୀଙ୍କ ପାଖରେ ଗଣେଶଙ୍କର ଏଭଳି ଆପତ୍ତିଜନକ ବ୍ୟବହାର ଦେଖିଲେ ମନେହୁଏ ଦକ୍ଷିଣ ଭାରତରେ ଯେତେବେଳେ ଶିବ ଓ ବିଷ୍ଣୁଙ୍କୁ କେନ୍ଦ୍ର କରି ଧାର୍ମିକ ମତଭେଦ ଉତ୍କଟ ହୋଇ ଉଠିଥିଲା, ଶୈବ ଧର୍ମକୁ କଦର୍ଯ୍ୟ ଭାବରେ ଚିତ୍ରିତ କରିବା ପାଇଁ ହୁଏତ ବିରୁଦ୍ଧ ଗୋଷ୍ଠୀ ପକ୍ଷରୁ ଏଭଳି ମୂର୍ତ୍ତି ଗଠନ କରାଯାଇଥିଲା । ଏଭଳି ଏକ ଅଶ୍ଳୀଳ ଧାରଣା ହିଁ ବସ୍ତୁସ୍ଥକର । ଏହାର ଐତିହାସିକ କାରଣ ଅନୁସନ୍ଧେୟ ।

## (୮) ଚତୁର୍ଦ୍ଧାମ ମନ୍ଦିର :—

ଏହି ଭଣ୍ଡ ଗଣେଶ ମନ୍ଦିରକୁ ଲଗିକରି ପଶ୍ଚିମ ଦ୍ୱାର ଆଡ଼କୁ ବାଟ ଅଛି । ଭିତର ପାଚେରିର ଦ୍ୱାର ପାରହୋଇ ବାହାର ପାଚେରିର ପଶ୍ଚିମ ଦ୍ୱାର ଆଡ଼କୁ ଗଲେ ବାମପଟକୁ ଛୋଟିଆ ଚତୁର୍ଦ୍ଧାମ ମନ୍ଦିର ପଡ଼େ । ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଭାରତରେ ଚାରି ଧାମ ପ୍ରତିଷ୍ଠା କରିଥିଲେ—ପୂର୍ବ ଧାମ = ପୁରୀ, ଉତ୍ତର ଧାମ =

ବଦରିନାଥ, ପଶ୍ଚିମଧାମ = ଦ୍ୱାରକା ଏବଂ ଦକ୍ଷିଣଧାମ = ରାମେଶ୍ୱର । ପ୍ରତ୍ୟେକ ଧର୍ମପ୍ରାଣ ହିନ୍ଦୁ ଜୀବନରେ ଅନ୍ତତଃ ଥରେ ଏହି ଚାରିଧାମର ଚାରି ଦିଅଁଙ୍କୁ ଦେଖିବାକୁ ଇଚ୍ଛା କରନ୍ତି । ଯେଉଁମାନେ ଅସୁବିଧା ହେତୁ ଚାରିଧାମ କରିପାରନ୍ତି ନାହିଁ, ସେମାନଙ୍କୁ ଗୋଟିଏ ମନ୍ଦିରରେ ଚାରିଧାମର ଦେବତାଙ୍କୁ ଦେଖାଇଦେବା ଲାଗି ଏହି ମନ୍ଦିର ସ୍ଥାପିତ ହୋଇଛି । ଏହାର କଳ୍ପନା ଯେପରି ପ୍ରୀତିକର, ଏହି ମନ୍ଦିରରେ ଚାରିଧାମର ଦିଅଁଙ୍କ ଦର୍ଶନ ସେହିପରି ଆନନ୍ଦଦାୟକ ।

## (୯) ଫୁଲବଗିଚା

ଚାରିଧାମ ମନ୍ଦିରର ଆଗକୁ ଏବଂ ତାର ଖୁବ୍ ନିକଟରେ ଜଗନ୍ନାଥଙ୍କର ଏକ ଫୁଲବଗିଚା ରହିଅଛି । ଚାରିପଟର ଭୂମିପତନ ଠାରୁ ପ୍ରାୟ ପନ୍ଦର ଫିଟ୍ ଉଚ୍ଚରେ ଥିବା ଏହି ବଗିଚା ବଡ଼ ଶାନ୍ତି-ପ୍ରଦ । ଏଠାରୁ ତୁଳସୀ ଯାଇ ଜଗନ୍ନାଥଙ୍କ ଅଙ୍ଗରେ ଲାଗିହୁଏ ।

## (୧୦) ନୀଳାଦ୍ରି ବିହାର

ଫୁଲବଗିଚା ଦ୍ୱାର ଆଗକୁ (ଆରପଟକୁ) ନୀଳାଦ୍ରି ବିହାରର ପ୍ରବେଶମାର୍ଗ । ଜଣ ପିଚ୍ଛା ୨୫ ପଇସା ଟିକଟ କରି ତା ଭିତରକୁ ଯିବାକୁ ହୁଏ । ସୁନ୍ଦର ସୁନ୍ଦର ମୂର୍ତ୍ତି ସାହାଯ୍ୟରେ ତହିଁରେ ଦେଖାଇ ଦିଆଯାଇଛି, ଜଗନ୍ନାଥଙ୍କ ପ୍ରାଚୀନ ଇତିହାସର କେତୋଟି ଦିଗ ।
୧—କପଟ ଜାରାଶବର ଶ୍ରୀକୃଷ୍ଣଙ୍କୁ ମାରିଦେବା ପରେ ତାଙ୍କର ଦେହର ଅପୋଡ଼ା ଅଂଶ ବଟଡାଳରେ ବନ୍ଧାଯାଇ ପଶ୍ଚିମ ସମୁଦ୍ରକୁ ଫିଙ୍ଗିଦିଆଗଲା ଏବଂ ତାହା ଦକ୍ଷିଣ ଭାରତର ଶେଷସୀମା 'କନ୍ୟା

କୁମାଖା ବାଟେ ବୁଲି ବୁଲି ଆସି ଧୂଷା ଚାଙ୍ଗୀଥଠୀଟେ ଲାଗିଲ । ୨—କପଟର ମାଳବ ରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନ ଦେଖି ସମୁଦ୍ରରୁ ଦିବ୍ୟ କାଠ ଉଦ୍ଧାର କରାଇଲେ । ୩ । କପଟର ତାହା ଆଗରୁ ଶବରରାଜା ବିଶ୍ୱାବସୁ ଗୋପନରେ ନୀଳମାଧବଙ୍କୁ ନୀଳଗିରି (ପୁରୀ) କନ୍ଦରରେ ପୂଜା କରୁଥିଲେ ଏବଂ ବିଦ୍ୟାପତି ସେହି ଶବରରାଜକନ୍ୟା ଲଳିତାଙ୍କୁ ବିବାହ କରି ପୂଜାର ସ୍ଥାନ ଠାବ କଲେ ଇତ୍ୟାଦି ୪ କପଟର ମୂର୍ତ୍ତି ଏବଂ ମନ୍ଦିର ତିଆରିହେଲା ଇତ୍ୟାଦି । ଏହାଛଡ଼ା ଭଗବାନଙ୍କର ଭକ୍ତଙ୍କ ପ୍ରତି କୃପାବିଷୟକ ଅନେକ ପ୍ରାଚୀନ ଗଳ୍ପ ମୂର୍ତ୍ତି ସାହାଯ୍ୟରେ ଦେଖାଇଦିଆଯାଇଛି ।

## ୧୦—ସୂର୍ଯ୍ୟ ମନ୍ଦିର

ଲକ୍ଷ୍ମୀମନ୍ଦିର ଆଗକୁ ଏହି ମନ୍ଦିର ଅବସ୍ଥିତ । ଏହାକୁ ଚନ୍ଦ୍ରମନ୍ଦିର ମଧ୍ୟ କୁହାଯାଏ । ବିଶ୍ୱବିଖ୍ୟାତ କୋଣାର୍କ ମନ୍ଦିରରେ ଯେଉଁ ସୂର୍ଯ୍ୟ ମୂର୍ତ୍ତିଟି ପୂଜା ପାଉଥିଲା ଏବଂ ବିଧର୍ମୀ କଳାପାହାଡ଼ର ଆକ୍ରମଣ ଫଳରେ ଲୋକେ ତାକୁ ଏହି ମନ୍ଦିରକୁ ସ୍ଥାନାନ୍ତରିତ କରିଥିଲେ, ସେହି ମୂର୍ତ୍ତି ଏହି ମନ୍ଦିରରେ ଅଛି । କଥା ଅଛି ଯେ ଏଭଳି ଅପବିତ୍ର ମୂର୍ତ୍ତି ପୂଜିତ ହେବ ନାହିଁ ଏବଂ ଦରକାର ହେଲେ ଅନ୍ୟ ଏକ ମୂର୍ତ୍ତି ପଛରେ ହିଁ ସ୍ଥାପିତ ହେବ । ଏହି ଅନୁସାରେ ସୂର୍ଯ୍ୟ ମୂର୍ତ୍ତିଟି ଅନ୍ୟ ଏକ ମୂର୍ତ୍ତିର ପଛପଟେ ଅଛି । ଟର୍ଚ୍ଚ ବା ଦୀପ ନ ନେଇ ମନ୍ଦିର ଭିତରକୁ ଗଲେ ମୂର୍ତ୍ତି ଦେଖିହେବ ନାହିଁ ।

## ୧୧—କୋଇଲି ବୈକୁଣ୍ଠ

ଏହି ସୂର୍ଯ୍ୟମନ୍ଦିରରୁ ପୂର୍ବ ଦିଗକୁ ୨୫/୩୦ ହାତ ଗଲା ପରେ ଭିତର ବେଢ଼ାର ଉତ୍ତର ଦ୍ୱାର ଆଖିରେ ପଡ଼ିବ । ନବ କଳେବର

ବେଳେ ମହାପ୍ରଭୁଙ୍କ ଦାରୁ (କାଠଗଣ୍ଡି) ଏହି ଉତ୍ତର ଦ୍ୱାର ଦେଇ ଦେଉଳ ଭିତରକୁ ପ୍ରବେଶ କରେ । ସୁତରାଂ ସର୍ବସାଧାରଣ ଏହାକୁ ବ୍ୟବହାର କରି ନ ଥାନ୍ତି । ଉତ୍ତର ଦ୍ୱାର ପାରହୋଇ ବାମ ପଟକୁ ବୁଲିଲେ କୋଇଲି ବୈକୁଣ୍ଠ ଦେଖିବାକୁ ହୁଏ । ଆହୁରି ମଧ୍ୟ ସେହି ନବ କଳେବର ବେଳେ ତିନି ଦେବତାଙ୍କ ଦାରୁ ଏଠାରେ ଆସି ସମାଧି ଲାଭ କରନ୍ତି । ଶ୍ରୀକୃଷ୍ଣ ଯେଉଁଭଳି ଲତାବୃକ୍ଷବେଷ୍ଟିତ ବଣରେ ଶୋଇଥିବାର ପ୍ରବାଦ ଅଛି, ଏଠି ସେଭଳି ବୃକ୍ଷଲତା ଦେଖିବାକୁ ମିଳେ ।

ଏହା ମହାପ୍ରଭୁଙ୍କର ଶ୍ମଶାନ । ଏହାକୁ ଲାଗି ଯେଉଁ କୋଠାଘର ଅଛି, ତାହାର ଭିତର ପଟ କାନ୍ଥରେ ଧର୍ମଶାସ୍ତ୍ରପୂର୍ଣ୍ଣ କେତେକ ଗଳ୍ପ ଚମତ୍କାର ଭାବରେ ଚିତ୍ରିତ ହୋଇଛି । ମହାପ୍ରଭୁଙ୍କ ପାଇଁ ବଡ଼ ବଡ଼ ଭୋଗର ବ୍ୟବସ୍ଥା ଏଇ କୋଠାଘରେ କରାଯାଏ ।

## ୧୨—ଈଶାନେଶ୍ୱର ମନ୍ଦିର

କୋଇଲି ବୈକୁଣ୍ଠରୁ ସିଧା ସିଧା ଆନନ୍ଦ ବଜାରକୁ ଗଲେ ଭୂମିଠାରୁ ପ୍ରାୟ ପନ୍ଦର ଫୁଟ୍ ଖାଲରେ ଥିବା ଏହି ମନ୍ଦିରଟି ପଡ଼େ । ଏହି ମନ୍ଦିରର ଇତିହାସ ହୁଏ ତ ଦିନେ ଆବିଷ୍କୃତ ହୋଇ ଶିକ୍ଷିତ ସମାଜରେ ତରଙ୍ଗ ଭଙ୍ଗ କରିବ । ଉପରୁ ଶିବଲିଙ୍ଗ ନିକଟକୁ, ତଳକୁ ତଳ ପାହାଚମାଳା ରହିଅଛି ।

## ୧୩ ଆନନ୍ଦ ବଜାର

ଭେଦଭାବବିନାଶକ ଓ ସାମ୍ୟମୈତ୍ରୀସଂସ୍ଥାପକ ହିନ୍ଦୁ ଧର୍ମର ପରମ ପବିତ୍ର 'ମହାପ୍ରସାଦ' ଏଠାରେ ବିକ୍ରି ହୁଏ ।

## ୧୪—ସ୍ନାନବେଦୀ

ଆନନ୍ଦ ବଜାରକୁ ଲାଗି ସ୍ନାନବେଦୀ । ବଡ ଦେଉଳର ତିନମୂର୍ତ୍ତି ବର୍ଷକେ ଦୁଇ ଥର ବାହାରକୁ ଆସନ୍ତି । ପ୍ରଥମ ଥର ଦେବସ୍ନାନ ପୂର୍ଣ୍ଣିମା ଦିନ ଏହି ବେଦି ଉପରକୁ ଏବଂ ଦ୍ୱିତୀୟଥର,ରଥଯାତ୍ରା ଦିନ ରଥ ଉପରକୁ ଦେବସ୍ନାନପୂର୍ଣ୍ଣିମା ଦିନ ବହୁଯାତ୍ରୀ ସମାଗମ ହୁଏ ଏବଂ ଜଗନ୍ନାଥେ ଦୋଳବେଦୀ ଉପରେ ହାତୀ ବେଶ ହୁଅନ୍ତି । କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ତାଙ୍କ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ପ୍ରଥମ ଛାନ୍ଦରେ ଏହି ବେଶର ସୁନ୍ଦର ବର୍ଣ୍ଣନା କରିଛନ୍ତି ।

## ୧୫—ଦକ୍ଷିଣ ଦ୍ୱାରର ବିଶାଳ ହନୁମାନ ମୂର୍ତ୍ତି

ଦକ୍ଷିଣ ଦ୍ୱାରରେ ସଡ଼କ ପଟକୁ ଖଣ୍ଡିଏ ପଥରରେ ଖୋଦିତ ବିଶାଳକାୟ ହନୁମାନ ମୂର୍ତ୍ତି ମଧ୍ୟ ଦର୍ଶନୀୟ । ଭିତର ବେଢ଼ାର ଦକ୍ଷିଣ ଦ୍ୱାରରୁ ବାହାର ବେଢ଼ାର ଦକ୍ଷିଣ ଦ୍ୱାରକୁ ଗଲେ ବାମ-ଭାଗରେ ଶ୍ରୀରାମଚନ୍ଦ୍ର ମନ୍ଦିର ପଡ଼େ । ରାମଭକ୍ତମାନଙ୍କ ପାଇଁ ଏହା ଏକ 'ଅବଶ୍ୟ ଦ୍ରଷ୍ଟବ୍ୟ' ସ୍ଥାନ ।

## ପୁରୀର ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ

ପୁରୀରେ ଆହୁରି ଅନେକ ଦର୍ଶନୀୟ ସ୍ଥାନ ଅଛି । ଭାଷା, ଧର୍ମ, ସଂସ୍କୃତି, ମୂର୍ତ୍ତି-ତତ୍ତ୍ୱ, ପାଷାଣକଳା, ଚିତ୍ରକଳା, ଲଳିତକଳା, ଭାରତୀୟ ଦର୍ଶନ, ଇଞ୍ଜିନିୟରିଂ କୌଶଳ, ଇତ୍ୟାଦି ଇତ୍ୟାଦି ଦୃଷ୍ଟିରୁ ବହୁତ କଥା ଏଠାରେ ଅଛି । ପୁରୀରେ ସାତ ଶହରୁ ବେଶି ମଠ ଥିଲା ଏବଂ ଧର୍ମଚର୍ଚ୍ଚା ଓ ଶାସ୍ତ୍ରଚର୍ଚ୍ଚାର କେନ୍ଦ୍ର ଭାବରେ

ସେଗୁଡ଼ିକ କାର୍ଯ୍ୟ କରୁଥିଲା । ଆଜି କିନ୍ତୁ ଅଧିକାଂଶ ଛିନ୍ନଭିନ୍ନ, ତେବେ କେତୋଟି କଥା ଏଠାରେ ଉଲ୍ଲେଖ କରାଯାଉଛି । ଗୋଟାଏ ଗୋଟାଏ ଅଞ୍ଚଳରେ ଯାହା ସବୁ ଅଛି ସେଗୁଡ଼ିକୁ ପାଖେ ପାଖେ ସମାବେଶ କରାଯାଇଅଛି । ଏହି କ୍ରମରେ ବୁଲି ଦେଖିଲେ ଅଳ୍ପ ସମୟରେ ବହୁତ କଥା ଦେଖିହେବ ।

## ୧—ଶ୍ରୀ ଲୋକନାଥ ମନ୍ଦିର

ଏହା ପୁରୀର ସର୍ବଶ୍ରେଷ୍ଠ ଶିବ ମନ୍ଦିର । ମନ୍ଦିର ନିର୍ମାଣ ବେଳେ ଭୂପୃଷ୍ଠ ଜମିର ଉଚ୍ଚତା ଯାହା ଥିଲା, ବର୍ତ୍ତମାନ ୧୫।୨୦ ଫୁଟ ବଢିଯାଇଛି । ଏପରିକି ପ୍ରାୟ ବର୍ଷମାସ କାଳ ମନ୍ଦିରର ଶିବଲିଙ୍ଗ ପାଣି ଭିତରେ ବୁଡ଼ି ରହୁଛନ୍ତି । ଅନେକ ଚର୍ମରୋଗୀ ଦେବତାପ୍ରସାଦରୁ ଏଠାରେ ରୋଗମୁକ୍ତ ହେବାର ପ୍ରବଳ ଜନ-ବିଶ୍ୱାସ ଅଛି । ଏବେ ମଧ୍ୟ ଲୋକେ ଅଧିଆ ପଡ଼ୁଛନ୍ତି । ଶୈବମାନଙ୍କ ପକ୍ଷରେ ଏ ମନ୍ଦିର ପରମ ପୁଣ୍ୟପୀଠ ।

ପୁରୀ ବଡ଼ ଦେଉଳର ଦକ୍ଷିଣ ପଶ୍ଚିମ କୋଣରୁ ଲୋକନାଥ ମନ୍ଦିରକୁ ରାସ୍ତା ପଡ଼ିଛି । ମନ୍ଦିର ପର୍ଯ୍ୟନ୍ତ ଯାନବାହନ ଯାଇପାରୁଛି । ସେଠାକୁ ଯାଇ ପୁଣି ଥରେ ବଡ଼ ଦେଉଳର ସିଂହଦ୍ୱାରକୁ ଫେରି ଆସି ତଳଲିଖିତ ବର୍ଣ୍ଣିତ ସ୍ଥାନକୁ ସୁବିଧାରେ ଦେଖିହେବ ।

## ୧—ଏମାର ମଠ

୧—ଏହା ଠିକ୍ ସିଂହଦ୍ୱାରରେ ଅବସ୍ଥିତ । ହିନ୍ଦୁ-ଭିନ୍ନ ଅନ୍ୟ ଧର୍ମାବଲମ୍ବୀମାନେ ଓ ବୈଦେଶିକ ଯାତ୍ରୀମାନେ ଏହି ମଠର

ପାଞ୍ଚ ତାଲ୍ଲ ଉପରୁ ଜଗନ୍ନାଥ ମନ୍ଦିର, ବଡ଼ଦାଣ୍ଡ ଏବଂ ପୁରୀ ସହରର ଦୃଶ୍ୟ ଦେଖିଥାଆନ୍ତି ।

୨—ଏହି ମଠ ବିଶିଷ୍ଟାଦ୍ୱୈତ ସଂପ୍ରଦାୟର ସୁପ୍ରସିଦ୍ଧ ମଠ । ସୁତରାଂ, ଭାରତବିଖ୍ୟାତ ଦାର୍ଶନିକ ରାମାନୁଜାଚାର୍ଯ୍ୟଙ୍କ ପବିତ୍ର ନାମ ସଙ୍ଗେ ସଂପୃକ୍ତ ।

୩—ଏହାର ଦୋତାଲ ଉପରେ ଓଡ଼ିଶାର ଗୋଟିଏ ବିଶାଳ ପାଠାଗାର (ନାମ—ରଘୁନନ୍ଦନ ପାଠାଗାର) ଅବସ୍ଥିତ ଏବଂ ସର୍ବ ସାଧାରଣ ବହୁ ସଂଖ୍ୟାରେ ଏହାର ସଦ୍‌ବ୍ୟବହାର କରନ୍ତି ।

୪—ଏହାର ଭିତରେ ପ୍ରାୟ ଦୁଇ ତିନି ଶହ ବର୍ଷତଳର ଭିତ୍ତିଚିତ୍ର (କାନ୍ଥରେ ହୋଇଥିବା ଚିତ୍ରମାନ) ରହିଅଛି ଏବଂ ଚିତ୍ରକଳା ଦୃଷ୍ଟିରୁ ଏହା ବିଶେଷ ମୂଲ୍ୟବାନ୍ ।

## ୩—ଦକ୍ଷିଣ ପାର୍ଶ୍ୱ ମଠ

ସିଂହଦ୍ୱାରରୁ ଏମାର ମଠ କଡ଼ ଦେଇ ସମୁଦ୍ର କୂଳରେ ଥିବା ପ୍ରସିଦ୍ଧ ଶ୍ମଶାନ (ନାମ-ସ୍ୱର୍ଗଦ୍ୱାର)କୁ ଯାଇହୁଏ । ଏଠାରୁ ସ୍ୱର୍ଗଦ୍ୱାର ଆଡକୁ ଯିବା ରାସ୍ତାରେ ଜଗନ୍ନାଥ ମନ୍ଦିରର ବାହାର ବେଢ଼ାର ଦକ୍ଷିଣ ଦ୍ୱାର ଆଡକୁ ଟିକିଏ ବୁଲିଗଲେ (ଦକ୍ଷିଣପାର୍ଶ୍ୱ ମଠ) ଦେଖିହୁଏ । ଭାରତର ସୁପ୍ରସିଦ୍ଧ ଦେଶପ୍ରେମୀ ବୀର ଛତ୍ରପତି ଶିବାଜୀଙ୍କର ଗୁରୁ ସ୍ୱନାମଧନ୍ୟ ରାମଦାସଙ୍କ ସମୟରୁ ଏହି ମଠ ମହାରାଷ୍ଟ୍ର ସଙ୍ଗେ ସମ୍ପୃକ୍ତ ଥିବାର ଜଣାଯାଏ । ଏହା ମଧ୍ୟ ଏକ ପ୍ରାଚୀନ ମଠ । ଏହି

ମଠ ଭିତରେ ଏକ ଉପାସନା କକ୍ଷରେ ଦୁଇ ତିନି ଶହ ବର୍ଷ ତଳର ଯେଉଁ ସବୁ ଚିତ୍ର ବିଭିନ୍ନ ଖମ୍ବ ଓ କାନ୍ଥମାନଙ୍କରେ ରହିଅଛି, ଆଜି ବିଦେଶୀ ପର୍ଯ୍ୟଟକମାନେ ସେସବୁ ଦେଖି ମୁଗ୍ଧ ହୋଇଯାଉଛନ୍ତି ।

## (୪) ବଡ଼ ରାଧାକାନ୍ତ ମଠ

ଦକ୍ଷିଣ ଦ୍ୱାର ପାଖରୁ ଏମାର ମଠ ପାଖକୁ ଫେରିଆସି ସ୍ୱର୍ଗଦ୍ୱାର ରାସ୍ତାରେ ପ୍ରାୟ ତିନି ଚାରି ମିନିଟ୍‌ର ବାଟ ଚାଲିବା ପରେ ବାମଭାଗରେ 'ବଡ଼ ରାଧାକାନ୍ତ ମଠ' ଏବଂ ଡାହାଣ ପଟେ ଶ୍ୱେତ-ଗଙ୍ଗା ପୋଖରୀ ଦେଖିହେବ ।

'ବଡ଼ ରାଧାକାନ୍ତ ମଠ' ଚୈତନ ମହାପ୍ରଭୁଙ୍କର ଶିଷ୍ୟମାନଙ୍କ ପାଇଁ ପୁରୀର ପରମ ପବିତ୍ର ପୀଠ । ଚୈତନ୍ୟଦେବଙ୍କର ଜଣେ ପୂର୍ବ-ପୁରୁଷ ନିଜର ପାଣ୍ଡିତ୍ୟବଳରେ ଓଡ଼ିଶାକୁ ଥରହର କରୁଥିଲାବେଳେ ମାତ୍ସର୍ଯ୍ୟପରିପୂର୍ଣ ଓ ଅଳ୍ପଜ୍ଞାନସମ୍ପନ୍ନ ପଣ୍ଡିତମାନଙ୍କର ଷଡ଼ଯନ୍ତ୍ର ଫଳରେ ଜନନୀକଳ୍ପା ଜନ୍ମଭୂମି ଓଡ଼ିଶା ପରିତ୍ୟାଗ କରି ବଙ୍ଗ-ଦେଶକୁ ଚାଲିଯାଇଥିବାର କୁହାଯାଇଥାଏ । ୧୫୧୦ ଖ୍ରୀଷ୍ଟାବ୍ଦରେ (ଆଜକୁ ଚାରି ଶହ ନଅଷଠି ବର୍ଷ ତଳେ) ଚୈତନ୍ୟଦେବ ଓଡ଼ିଶାକୁ ଆସି ନିଜ ପୂର୍ବପୁରୁଷଙ୍କ ଜନ୍ମଭୂମି ଏହି ଓଡ଼ିଶାର ପବିତ୍ରତାରେ ମୁଗ୍ଧ ହୋଇ ଜୀବନର ଦୀର୍ଘ ଅଠର ବର୍ଷ କାଳ ଏହି ରାଧାକାନ୍ତ ମଠରେ (ସେକାଳର କାଶୀ ମିଶ୍ରଙ୍କ ଗମ୍ଭୀରାରେ) କଟାଇଥିଲେ ।

ଆଜି ସୁଦ୍ଧା ଚୈତନ୍ୟଦେବଙ୍କ ବ୍ୟବହୃତ କେତୋଟି ଜିନିଷ ଏଠାରେ ସଂରକ୍ଷିତ ହୋଇ ରହିଛି ।

ଗତ ଅଠର ଊଣିଶ ବର୍ଷ ଧରି ଦୈନିକ ଚବିଶ ଘଣ୍ଟା ଧରି ଅଖଣ୍ଡନାମସଂକୀର୍ତ୍ତନ ଏଠାରେ ଚାଲିଛି ।

## (୫) ଶ୍ୱେତଗଙ୍ଗା ପୁଷ୍କରିଣୀ

ପୁରୀର ଚାରୋଟି ପ୍ରସିଦ୍ଧ ପୋଖରୀ ଭିତରୁ ଏହିଁ ଶ୍ୱେତଗଙ୍ଗା ଗୋଟିଏ । କମ୍ବଦନ୍ତୀ ଅଛି ଯେ, ଅତି ପ୍ରାଚୀନ କାଳରେ ଶ୍ୱେତ ବାରାହ କଳ୍ପରେ ଏହା ଥିଲା ଏକ ଯଜ୍ଞକୁଣ୍ଡ । ପରେ ଏଠାରେ ଗଙ୍ଗାଦେବୀ ଆବିର୍ଭୂତ ହୋଇଥିଲେ । ଅର୍ଥାତ୍, ଏଠାରେ ଗଙ୍ଗାସ୍ନାନର ଫଳ ମିଳୁଥିଲା କିମ୍ବା ଏହି ପୋଖରୀ ସହିତ ଭୂଗର୍ଭ ଭିତରେ ବାଟ ଖୋଲାଯାଇ ଗଙ୍ଗାନଦୀର ଜଳ ଆଣିବାର ବ୍ୟବସ୍ଥା ହୋଇଥିଲା ।

କେହି କେହି ଉତ୍ତର ଭାରତୀୟ ଯାତ୍ରୀଙ୍କଠାରୁ ଜଣାଯାଇଛି ଯେ—ଆଲ୍ଲାହାବାଦ ନିକଟରେ ତ୍ରିବେଣୀ ସଙ୍ଗମ ପାଖରେ ମଧ୍ୟ ଏହି କଥା ଶୁଣାଯାଏ ଯେ, ସେଠାରୁ ଓଡ଼ିଶାର କୌଣସି ଜଳାଶୟ ସହିତ ଭୂଗର୍ଭରେ ବାଟ ଅଛି ।

ଏସବୁ ଏକାନ୍ତ ହାସ୍ୟାସ୍ପଦ ମନେହେଲେ ହେଁ ସୁଦୂର ଭବିଷ୍ୟତରେ ଏଥିର ରହସ୍ୟ ଜଣାପିବ ବୋଲି ଅନେକେ ଆଶା-ପୋଷଣ କରନ୍ତି । ବେଳେବେଳେ ଏହି ପୋଖରୀର ଗାଢ଼ ନୀଳ ଜଳ ହଠାତ୍ କୁଆଡ଼େ ଚାଲିଯାଇ ଏଥିରେ ଗଙ୍ଗାପାଣି ପରି ଧଳା ପାଣି ବାହାରିବାର ସମ୍ବାଦ ଖବରକାଗଜ ମାଧ୍ୟମରେ ଚମକ ସୃଷ୍ଟି କରିଥାଏ ।

## (୬) ସିଦ୍ଧବକୁଳ

ସ୍ୱର୍ଗଦ୍ୱାର ରାସ୍ତାର ଦୁଇ କଡ଼ରେ ଥିବା ରାଧାକାନ୍ତ ମଠ ଓ ଶ୍ୱେତଗଙ୍ଗା ଦେଖିସାରି ସେଇ ରାସ୍ତାରେ ଆଉ ୨ ମିନିଟର ବାଟ ଆଗକୁ ଗଲେ, ବାମପଟ ଗଳି ଭିତରକୁ ଯାଇ ସିଦ୍ଧବକୁଳ ନାମକ ଗୋଟିଏ ବଉଳଗଛ ଦର୍ଶନୀୟ ।

କଥା ଅଛି, ପ୍ରଧାନ ଜଗନ୍ନାଥଭକ୍ତ ଓ ବିଦେଶାଗତ ଯବନ ହରିଦାସଙ୍କୁ ପୁରୀରେ ରହିବାକୁ କେହି ଜାଗା ଦେଲେ ନାହିଁ । ଭକ୍ତପ୍ରବର ଚୈତନ୍ୟ ସେ ରହୁଥିବା କାଶୀମିଶ୍ରଙ୍କ ଗମ୍ଭୀରାଠାରୁ (ଆଜିର ବଡ଼ ରାଧାକାନ୍ତ ମଠଠାରୁ) ଅଳ୍ପ ଦୂରରେ ଗୋଟିଏ ବଉଳ ଦାନ୍ତକାଠି (ଯାହା ସେ ହସୁଥିଲେ ) ନେଇ ପୋତିଦେଲେ ଏବଂ ହରିଦାସଙ୍କୁ କହିଲେ—'ତୁମେ ଏହାର ମୂଳରେ ରହ ।' ସତକୁ ସତ ସେଇ ବାଳଗଦାରେ ଦାନ୍ତକାଠିଟି ଗଜା ହୋଇ ଗୋଟାଏ ଗଛ ହେଲା । ତାର ମୂଳରେ ହରିଦାସ ରହିଲେ ।

କିଛି ଦିନ ପରେ ପ୍ରସିଦ୍ଧ ରଥଯାତ୍ରା ହେଲା । ରଥ କାମରେ ବଉଳକାଠ ଦରକାର ହେଲା । ଏହିଭଳି ଗଛଟିର ଗଣ୍ଡି ଭଲ ବୋଲି ଏହାକୁ କୁରାଢ଼ିରେ ହାଣିବାକୁ ସ୍ଥିର ହେଲା । ଗଣ୍ଡି କଟା ହେଉ ହେଉ ଦେଖାଗଲା ଯେ ତାହାର ଭିତରଟା ଫମ୍ପା। ଏ ଖବର ଶୁଣି ରାଜା ବିଶ୍ୱାସ ନ କରି ନିଜେ ଦେଖିବାକୁ ଆସିଲେ ଇତ୍ୟାଦି ।

ଏବେ ମଧ୍ୟ କଟାଯିବା ଅବସ୍ଥାରେ ଗଛଟି ଶୋଇ ରହିଛି ଏବଂ ତାହା ମୂଳର ପୋଲ୍ ଅଂଶଟି ସ୍ପଷ୍ଟ ଭାବରେ ଦେଖି ହେଉଛି । ବଙ୍ଗଳାରୁ ଆସୁଥିବା ତୀର୍ଥଯାତ୍ରୀଙ୍କ ଦ୍ୱାରା ବିଶେଷ

ଭାବରେ ଏ ବୃକ୍ଷ ବନ୍ଦିତ ହୋଇଥାଏ, କାରଣ ଶ୍ରୀଚୈତନ୍ୟଙ୍କ ପବିତ୍ର ସ୍ମୃତି ସଙ୍ଗେ ଏହା ଜଡ଼ିତ ।

## (୭) ଅଷ୍ଟଶମ୍ଭୁ ମନ୍ଦିର

ସିଦ୍ଧବକୁଳଠାରୁ ସ୍ୱର୍ଗଦ୍ୱାର ରାସ୍ତାକୁ ପୁଣି ଫେରି ଆସି ସେଇ ରାସ୍ତାରେ ଆଉ ଟିକିଏ ବାଟ ଆଗକୁ ଗଲେ ଡାହାଣ ପଟକୁ ଗୋଟିଏ ପ୍ରଶସ୍ତ ଗଳି ପଡ଼େ । ସେଇ ଗଳିରେ ୩।୪ ମିନିଟର ବାଟ ଗଲେ ସୁପ୍ରସିଦ୍ଧ 'ଶ୍ୟାମାକାଳୀ' ମନ୍ଦିର ପଡ଼ିବ । ଚଣ୍ଡୀ-ସାଧକମାନଙ୍କ ପାଇଁ ଏହା ଏକ ସାଧନାର ପୀଠ । ଆଗେ ପୁରୀ ରାଜାଙ୍କର ନଅର (ରାଜବାଟୀ) ଏଠାରେ ଥିଲା ଏବଂ ତାର ଭିତରେ ଏ ଦେବୀ ପୂଜା ପାଉଥିଲେ । ସେଠାରେ ଶ୍ୟାମାକାଳୀ ମନ୍ଦିରକୁ ଲଗି ଅଷ୍ଟଶମ୍ଭୁ ମନ୍ଦିର ରହିଅଛି । ଥରେ ସେକାଳର ପୁରୀର ରାଜାଙ୍କୁ 'ବଡ଼ରୋଗ' ହେଲା । ପଣ୍ଡିତମାନେ କହିଲେ, "ନିଜର ଧରଣୀରେ ଆଠଟି ଶିବଲିଙ୍ଗ ପ୍ରତିଷ୍ଠା କଲେ ରୋଗ ଭଲ ହୋଇଯିବ ।" ବହୁ ଧନ ବ୍ୟୟରେ ରାଜା ଏଠାରେ ଆଠ ଗୋଟି ଶିବଲିଙ୍ଗ ପ୍ରତିଷ୍ଠା କରି ରୋଗମୁକ୍ତ ହୋଇଥିବାର କଥିତ ଅଛି ।

ଏହି ଶିବଲିଙ୍ଗଗୁଡ଼ିକ ନୟନପ୍ରୀତିକର । କେତୋଟି ଶିବ-ଲିଙ୍ଗ ଆକାରରେ କାଶୀ ବିଶ୍ୱନାଥଙ୍କ ପରି; କିନ୍ତୁ ତଫାତ୍ ହେଉଛି—କେତୋଟି ଶିବଲିଙ୍ଗକୁ ଆଠ ଦଶ ହାତ ଦୂରରୁ ଦେଖିଲେ ଜଣାଯିବ ଯେପରିକି, ଧଳାଚନ୍ଦନ, ନାଲିଚନ୍ଦନ ଓ କଳାଚନ୍ଦନ ତାଙ୍କ ଉପରେ ଦିଆଯାଇଛି । କିନ୍ତୁ ପ୍ରକୃତରେ ସେସବୁ ହେଉଛି ସେଇ ଲିଙ୍ଗ (ପାଷାଣ)ର ସ୍ୱାଭାବିକ, ପ୍ରାକୃତିକ ରଙ୍ଗ ।

ବିଶେଷ କଥା, ନୈସର୍ଗିକ ଭାବରେ ଏହି ଲିଙ୍ଗ (ଶିଳା) ଗୁଡ଼ିକ ସୂର୍ଯ୍ୟକିରଣ ପ୍ରତି ବିଭିନ୍ନ ପ୍ରତିକ୍ରିୟା ଦେଖାଇଥାନ୍ତି । ତେଣୁ ସ୍ଥାନୀୟ ଲୋକେ କହିଥାନ୍ତି—ଏହି ଚିବଲିଙ୍ଗଗୁଡ଼ିକ ସକାଳେ, ଖରାବେଳେ ଓ ସନ୍ଧ୍ୟାରେ ନିଜର କାନ୍ତି ବଦଳାଇଥାନ୍ତି ।

ସମଗ୍ର ଭାରତରେ ଏଭଳି ଅଷ୍ଟଲିଙ୍ଗଙ୍କର ସମାବେଶ ଏକାନ୍ତ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସେଇ ଅଷ୍ଟଶମ୍ଭୁ ମଠର ଆଗରେ ବହୁ କାଳରୁ ପଡ଼ିଥିବା, ଖଣ୍ଡିଏ ଖଣ୍ଡିଏ ପ୍ରକାଣ୍ଡ ପଥର ଦେହରୁ ରାଜା ଓ ରାଣୀଙ୍କର ଦୁଇଟି ବିଶାଳ ଗାଧୁଆ କୁଣ୍ଡ ଗତବର୍ଷ (୧୯୭୫) ଭୁବନେଶ୍ୱରକୁ ଅଣାଯାଇ ରାଜ୍ୟ ସଂଗ୍ରହାଳୟ (Orissa State Museum)ରେ ରଖାଯାଇଛି ।

## (୮) ବାଉଳି ମଠ ଓ ଦେଉଳଶୁର ଭାଇଟବୋହୂ କୂଅ

ଅଷ୍ଟଶମ୍ଭୁ ମଠର ପାଖରୁ ପୁଣି ଥରେ ସ୍ୱର୍ଗଦ୍ୱାର ରାସ୍ତାକୁ ଫେରି ଆସି ସ୍ୱର୍ଗଦ୍ୱାର ଆଡ଼େ ଗଲେ ପ୍ରାୟ ଚାରି ପାଞ୍ଚ ମିନିଟ୍‌ର ଚଲାବାଟ ପରେ (ଜଗନ୍ନାଥ ବେଦ ମହାବିଦ୍ୟାଳୟ ପରେ) ରାସ୍ତାର ବାମ ପଟେ 'ବାଉଳି ମଠ' ପଡ଼ିବ । ଏହା ଶିଖଗୁରୁ ନାନକଙ୍କର ପବିତ୍ର ସ୍ମୃତି ସଙ୍ଗେ ବିଜଡ଼ିତ ଏବଂ ପୁରୀକୁ ଆସୁଥିବା ଶିଖ ସଂପ୍ରଦାୟର ଲୋକଙ୍କ ପକ୍ଷେ ପରମ ପବିତ୍ର ସ୍ଥାନ । ଏ ମଠ ଭିତରେ ସେମାନେ ଗୁରୁ ନାନକ ଏବଂ ଗ୍ରନ୍ଥସାହେବଙ୍କର ବନ୍ଦନା କରନ୍ତି ।

ମଠ ଭିତରେ ଗୋଟିଏ କୂଅ ଅଛି । ତାର ନାମ 'ଦେଢ଼ଶୁର ଭାଇବୋହୂ କୂଅ ।' ଆମ ଦେଶରେ ଚଳଣି ଅଛି ଯେ ଆମ୍ଭମାନଙ୍କର ପରିବାରରେ ବଡ ଭାଇର ସ୍ତ୍ରୀ ସାଙ୍ଗେ ସାନ ଭାଇ କଥା ହୋଇ ପାରିବ । ମାତ୍ର ସାନ ଭାଇର ସ୍ତ୍ରୀ ସହିତ ବଡ଼ ଭାଇ କଥା ହେବା ଦୂରରେ ଥାଉ, ତାକୁ ଦେଖି ମଧ୍ୟ ପାରିବ ନାହିଁ ।

ମନେ କରନ୍ତୁ, ଘରେ କେବଳ ଦୁଇ ଭାଇ ଓ ତାଙ୍କର ଦୁଇ ସ୍ତ୍ରୀ ରହୁଛନ୍ତି । ବଡ଼ ଭାଇର ସ୍ତ୍ରୀ ବାପଘରକୁ ଚାଲିଯାଇଛି ଏବଂ ଏବେ ସକାଳ ବେଳା ସାନ ଭାଇ ବଜାରକୁ ଯାଇଛି । ତାହା ହେଲେ, ଘରେ ରହିଲେ ବଡ଼ ଭାଇ ଏବଂ ସାନ ଭାଇର ସ୍ତ୍ରୀ । ଏଣେ ରାନ୍ଧିବା ପାଇଁ ସାନ ଭାଇର ସ୍ତ୍ରୀ କୂଅରୁ ପାଣି ଆଣିବାକୁ ଚାହୁଁଛି । ତେଣେ ବଡ଼ ଭାଇର ଗାଧୋଇବା ପାଇଁ ପାଣି ଦରକାର । କେହି ତ କାହାକୁ ଦେଖିବେ ନାହିଁ । ଏ ସମସ୍ୟାର ସମାଧାନ ହେବ କପରି ?

ପ୍ରତ୍ୟକ୍ଷ ପ୍ରଣାଳୀରେ (Direct Method) ଏ ସମସ୍ୟାର କପରି ସମାଧାନ ହେବ, ତାହା ରେ ଦେଢ଼ଶୁର ଭାଇବୋହୂ କୂଅ ଦେଖି ଦେଖି ଜାଣିହେବ ।

ଏଠାରେ ଏ କଥା ମଧ୍ୟ କହିଦେବା ଦରକାର ଯେ ଏଇ ସାମାଜିକ ବିଧିକୁ ଓଡ଼ିଆ ଜାତି ଜଗନ୍ନାଥ ମନ୍ଦିରରେ ମଧ୍ୟ ଖଞ୍ଜି-ଦେଇଛି । ଓଡ଼ିଶାର ରଜାଙ୍କୁ ଚଳନ୍ତି ବିଷ୍ଣୁ ବା ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା କୁହାଯାଏ । ତାହାହେଲେ ଓଡ଼ିଶାର ମହାରାଣୀ ହେଲେ ଜଗନ୍ନାଥଙ୍କ ବଡ଼ ଭାଇ ବଳଭଦ୍ରଙ୍କର ଭାଇବୋହୂ ଏବଂ

ବଳଭଦ୍ର ହେଲେ ମହାରାଣୀଙ୍କର ଦେଢ଼ଶୁର । ସୁତରାଂ, ମହାରାଣୀ ଯେତେବେଳେ ଜଗନ୍ନାଥଙ୍କୁ ଦେଖିବାକୁ ଯାଆନ୍ତି, ବଳଭଦ୍ର ଏବଂ ରାଣୀଙ୍କ ଭିତରେ ଏକ ପରଦା ଟଣାଯାଏ, ଯାହା ଫଳରେ କେହି କାହାକୁ ଦେଖି ପାରନ୍ତି ନାହିଁ, ମହାରାଣୀ ଜଗନ୍ନାଥ ଓ ସୁଭଦ୍ରାଙ୍କୁ ଦର୍ଶନ କରି ଫେରି ଆସନ୍ତି ।

ବାଉଳି ମଠରୁ ପୁଣି ରାସ୍ତାକୁ ଫେରି ଆସି ଆଉ ଦୁଇ ଶହ ହାତ ଆଗକୁ ଗଲେ 'ସ୍ୱର୍ଗଦ୍ୱାର' ଛକ ପଡ଼େ । ପ୍ରତିଦିନ କଲିକତାରୁ ଆସୁଥିବା ବହୁ ବଙ୍ଗାଳୀ ଯାତ୍ରୀ ଏଇ ଛକ ଅଞ୍ଚଳରେ ରହନ୍ତି । ଛକ ଉପରେ ରାସ୍ତାର ଡାହାଣ କଡକୁ ଅଛି କବୀର ଛତା ଆଖଡ଼ା । ଉତ୍ତର ଭାରତର ସ୍ୱନାମଧନ୍ୟ 'ସନ୍ଥକବି 'କବୀର' ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ପୁରୀ ଆସିଥିଲେ । ମାତ୍ର ହିନ୍ଦୁ ହୋଇ ନଥିବାରୁ କୁଆଡେ ଭିତରକୁ ଯିବାକୁ ଅନୁମତି ପାଇଲେ ନାହିଁ । ସେ ଜଣେ ଐଶୀଶକ୍ତି-ସମ୍ପନ୍ନ ପୁରୁଷ ଥିଲେ । କିମ୍ବଦନ୍ତୀ ଅଛି, ଦିନେ ସମୁଦ୍ରରେ ପ୍ରବଳ ଜୁଆର ଉଠି, ସହର ଆଡ଼କୁ ମାଡି ଆସୁଥାଏ । ଏହି ସାଧୁଙ୍କଠାରେ ଅଦ୍‌ଭୁତ ଶକ୍ତି ଥିବା ଶୁଣି ଲୋକେ ତାଙ୍କର ଶରଣାପନ୍ନ ହେବାରୁ ସେ ସେଠାରେ, ଅର୍ଥାତ୍ ଏହି ଆଖଡ଼ା ଯେଉଁଠାରେ ଅଛି, ସେଠାରେ ଗୋଟିଏ ଛତା ପୋତିଦେଇ ଆଗକୁ ମାଡ଼ି ନ ଆସିବାକୁ ସମୁଦ୍ରକୁ ସଙ୍କେତ ଦେଲେ । ତାହାହିଁ କୁଆଡ଼େ ହେଲା, ପୁରୀ ସହର ସେଥିଲାଗି କୁଆଡ଼େ ରକ୍ଷା ପାଇଗଲା । ଏବେ ସ୍ଥାନଟିର ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ତଥାପି ଭିତରେ ଥିବା କବୀରଙ୍କ ସମାଧି ଆଜି ସୁଦ୍ଧା ଅନେକଙ୍କର ମନରେ ଅସୀମ ଭକ୍ତି ସୃଷ୍ଟି କରିଥାଏ ।

## (୯) ତିନୋଟି ନୂତନ ମନ୍ଦିର

ସ୍ୱର୍ଗଦ୍ୱାର ପାଖରେ (ସ୍ୱର୍ଗଦ୍ୱାରଠାରୁ ଉତ୍ତର ପଟକୁ-ସମୁଦ୍ରକୂଳରେ ଯେଉଁ ସୁନ୍ଦର ରାସ୍ତା ପଡ଼ିଛି, ତାର କଡ଼ରେ) ଏବେ ପ୍ରାୟ ଦୁଇ ବର୍ଷ ତଳେ ନିର୍ମିତ ହୋଇଥିବା ଆଧୁନିକ ଧରଣର ତିନୋଟି ମନ୍ଦିର ମଧ୍ୟ ଦର୍ଶନୀୟ । ଏ ଗୁଡ଼ିକରେ ଶଙ୍କରାଚାର୍ଯ୍ୟ, ଜୟଦେବ ଏ ଏବଂ ପଦ୍ମାବତୀଙ୍କ ବିଗ୍ରହ ପୂଜା ପାଉଛନ୍ତି । ଏଗୁଡ଼ିକର ନିର୍ମାଣଶୈଳୀ ଅନ୍ୟ ଅନେକ ମନ୍ଦିରର ଅନୁକରଣୀୟ ।

## (୧୦) ହରିଦାସ ମଠ

ସ୍ୱର୍ଗଦ୍ୱାର ଛକରୁ ପଶ୍ଚିମ ପଟକୁ ଯାଇଥିବା ରାସ୍ତାରେ ଦୁଇ ତିନ ମିନିଟର୍ ବାଟ ଚାଲିବା ପରେ ବାମଭାଗରେ ହରିଦାସ ମଠ ପଡ଼ିବ । ସାଧୁପ୍ରବର ଯବନ ହରିଦାସ ଓଡ଼ିଶାକୁ ଆସି ଜଗନ୍ନାଥଙ୍କର ପରମ ଭକ୍ତ ହୋଇଯାଇଥିଲେ । ଏହି ମଠ ଭିତରେ ଥିବା ଚୈତନ୍ୟ ମହାପ୍ରଭୁଙ୍କର ପ୍ରତିମୂର୍ତ୍ତି ଆକର୍ଷଣୀୟ । ମଠ ଭିତରେ ସାଧୁଙ୍କର ସମାଧି ରହିଅଛି । ସନ୍ଧ୍ୟା ଛଅଟାଠାରୁ ଆଠଟା ଭିତରେ ସ୍ଥାନଟି ଦର୍ଶନୀୟ ।

## (୧୧) ଜଗନ୍ନାଥ ଦାସ ସ୍ମୃତିମନ୍ଦିର ଓ ସାତଲହଡ଼ି ମଠ

ହରିଦାସ ମଠଠାରୁ ସେହି ରାସ୍ତାରେ ଆଉ ତିନ ଚାରି ମିନିଟ୍‌ର ବାଟ ଆଗକୁ ଯାଇ ବାମପଟକୁ ସମୁଦ୍ର ଆଡ଼କୁ ବୁଲିଲେ ଓଡ଼ିଆ ଭାଗବତ ଲେଖକ ଜଗନ୍ନାଥଦାସଙ୍କ ସ୍ମୃତି ମନ୍ଦିର ଦେଖି-

ହେବ । କଥା ଅଛି, ଜଗନ୍ନାଥ ଦାସ ସମୁଦ୍ରକୁ କହିଲେ, "ମୋ ପାଇଁ ତୁ ସାତ ଗୋଟି ଲହଡ଼ ପଛକୁ ଫେରିଯା ଏବଂ ସେଇ ଜାଗାରେ ମୁଁ ମୋର ମଠ ସ୍ଥାପନ କରିବ ।" ସତକୁ ସତ ସମୁଦ୍ର ପଛକୁ ଫେରିଗଲା ଏବଂ ସେଦିନଠାରୁ ଏହି ଘଟଣାର ସ୍ମୃତି ସଙ୍କେତ ଦେଇ ମଠର ନାମ ରହିଲା, "ସାତଲହଡ଼ ମଠ ।"

ଅଖତର ସେହି ମଠଟି ଭାଙ୍ଗିଯାଇଛି । କିନ୍ତୁ ଖୁବ୍ ନିକଟରେ ଗୋଟିଏ ଛୋଟିଆ ମନ୍ଦିର ନିର୍ମାଣ କରାଯାଇ ତାର ଭିତରେ ଜଗନ୍ନାଥ ଦାସଙ୍କର ଧଳା ମାର୍ବଲ୍ ପଥରର ସୁଦୃଶ୍ୟ ମୂର୍ତ୍ତି ସ୍ଥାପିତ ହୋଇଅଛି ।

ଓଡ଼ିଆ ଭାଷା ଏବଂ ଓଡ଼ିଆ ସାହିତ୍ୟ ତଥା ଓଡ଼ିଆ ସଂସ୍କୃତିକୁ ଯେଉଁମାନେ ଭଲ ପାଆନ୍ତି, ପୁରୀ ଯିବାବେଳେ ଏହି ସ୍ମୃତିମନ୍ଦିର ଏବଂ ଭକ୍ତକବିଙ୍କ ମନୋରମ ମୂର୍ତ୍ତି ଦେଖିବା ଓ ତାଙ୍କୁ ପ୍ରଣାମ ଜଣାଇବା ସେମାନଙ୍କର ପ୍ରିୟ କର୍ତ୍ତବ୍ୟ ।

## (୧୨) ଗୌଡ଼ୀୟ ମିଶନ ମଠ

ଜଗନ୍ନାଥ ଦାସ୍ଙ୍କ ସ୍ମୃତିମନ୍ଦିର ପାଖରୁ ରାସ୍ତାକୁ ଫେରି ଆସି ରାସ୍ତାର ଉତ୍ତର ପଟକୁ ବୁଲିଲେ ଗୌଡ଼ୀୟ ମିଶନ ମଠରେ ପହଞ୍ଚି ହେବ । ଏହି ମଠ-ପ୍ରାଙ୍ଗଣ, ଉପାସନା-ମନ୍ଦିର ଏବଂ ଦେବ-ମନ୍ଦିର ଅତ୍ୟନ୍ତ ପରିଷ୍କାର ପରିଚ୍ଛନ୍ନ ଏବଂ ପ୍ରାଙ୍ଗଣରେ ତଥା ଉପାସନା-ମନ୍ଦିରର କାନ୍ଥମାନଙ୍କରେ ବିଷ୍ଣୁଙ୍କର ବିବିଧ ଲୀଳା ବର୍ଣ୍ଣନାମୂଳକ ଆଧୁନିକ ଧରଣର ଅତ୍ୟନ୍ତ ଆକର୍ଷଣୀୟ ମୂର୍ତ୍ତିମାନ

ରହିଅଛି । ବିଦେଶୀ ପର୍ଯ୍ୟଟକମାନେ ସେସବୁ ଦେଖି ବିଶେଷ ଆନନ୍ଦିତ ହୁଅନ୍ତି ।

## (୧୩) ଗୋବର୍ଦ୍ଧନ ମଠ

ଏହା ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ଭାରତବିଖ୍ୟାତ ମଠ । ଶଙ୍କରାଚାର୍ଯ୍ୟ ଯେତେବେଳେ ଏହି ମଠ ସ୍ଥାପନା କଲେ, ସେତେବେଳେ ଭୂମିର ଉଚ୍ଚତା କ'ଣ ଥିଲା, ତାହା ଏହି ମଠ ଦେଖିଲେ ଜାଣିହେବ । ମଠ ଭିତରେ ଥିବା ଦେବମନ୍ଦିର ଓ ଉପାସନା-ମନ୍ଦିରକୁ ଗଲାବେଳେ ଗୋଟାଏ ବାମ୍ଫି (ବାପି) ଭିତରକୁ ଗଲାପରି ଲାଗେ । ଆଜି ମଠ ଚାରିପଟେ ପ୍ରାୟ କୋଡ଼ିଏ ଫୁଟ ଉଚ୍ଚର ବାଲି ଢେର ରହିଛି । ଶଙ୍କରାଚାର୍ଯ୍ୟ ଭାରତର ଚାରି କୋଣରେ ଚାରୋଟି ମଠ ସ୍ଥାପନା କରି ଚାରିଧାମ ବୁଲି ଦେଖିବାର ଯେଉଁ ବଳିଷ୍ଠ ପରମ୍ପରା ସୃଷ୍ଟି କରିଯାଇଛନ୍ତି, ତନ୍ମଧ୍ୟରେ ଏହି ମଠ ପୂର୍ବଧାମର ପ୍ରତିନିଧି ।

ମଠ ଭିତରେ ଥିବା ଧଳା ମାର୍ବଲ୍ ପଥରର ଶଙ୍କରାଚାର୍ଯ୍ୟଙ୍କର ପ୍ରତିମୂର୍ତ୍ତି ଅତ୍ୟନ୍ତ ଚିତ୍ତାକର୍ଷକ । ସମଗ୍ର ଭାରତର ଶଙ୍କରପନ୍ଥୀ-ମାନଙ୍କ ପାଇଁ ଏହି ମଠର ପ୍ରତ୍ୟେକ ଧୂଳିକଣା ପରମ ପବିତ୍ର ।

## (୧୪) ନୀଳାଚଳ ଆଶ୍ରମ

ଏହି ଗୋବର୍ଦ୍ଧନ ମଠ ବା ଶଙ୍କରାଚାର୍ଯ୍ୟ ମଠର ପ୍ରବେଶ ଦ୍ୱାର ପାଖରୁ ପ୍ରାୟ ତିନି ଶହ ହାତ ପଶ୍ଚିମକୁ ଗଲେ 'ନୀଳାଚଳ ଆଶ୍ରମ' ପଡ଼େ । ଏହା ଏକ ଆଧୁନିକ ଆଶ୍ରମ । ସ୍ଥାନଟି ସୁନିର୍ମଳ,

ଶାନ୍ତିପ୍ରଦ ଏବଂ ଧ୍ୟାନ ପାଇଁ ଉପଯୁକ୍ତ । ମନ୍ଦିର ଭିତରର ରାଧାକୃଷ୍ଣ ମୂର୍ତ୍ତି ଦେଖିବାକୁ ଭାରି ସୁନ୍ଦର । ମନ୍ଦିରର ଦକ୍ଷିଣ ପଟ ପିଣ୍ଡା ଉପରେ ଠିଆହେଲେ ଦୂରରେ, ବହୁତ ତଳେ ନୀଳ ସମୁଦ୍ର ଦେଖାଯାଏ । ଏଠାରେ ଗତ ଚଉଦ ବର୍ଷ ଧରି ଅଖଣ୍ଡ (ଅର୍ଥାତ୍ ଦିନକୁ ଚବିଶ ଘଣ୍ଟା ଧରି) ନାମସଂକୀର୍ତ୍ତନ ଚାଲିଛି । ଉପାସନା ମନ୍ଦିର ଭିତରେ ଥିବା ଚୈତନ୍ୟ ମହାପ୍ରଭୁ ପ୍ରଭୃତିଙ୍କର ସୁଦୃଶ୍ୟ ଚିତ୍ରାବଳୀ ବଡ଼ ଭାବ-ଉଦ୍ଦୀପକ ।

## (୧୫) ବଡ଼ ଦାଣ୍ଡ

ସେଠାରୁ ପୁଣି ସ୍ୱର୍ଗଦ୍ୱାର ପାଖକୁ ଫେରି ଆସି ସମୁଦ୍ର କୂଳେ କୂଳେ ଜଲ୍ଲାପାଳଙ୍କ କଚେରୀ ପର୍ଯ୍ୟନ୍ତ ଆସିବା ବେଳେ ଡାହାଣ ପଟେ ଏକ କିଲୋ ମିଟରରୁ ଅଧିକ ରାସ୍ତାରେ ମହୋଦଧିର ଜନମନବିମୋହନ ରୂପମାଧୁରୀ ଉପଭୋଗ କରିହୁଏ । ଜଲ୍ଲାପାଳଙ୍କ କଚେରୀଠାରୁ ଦୋଳ ମଣ୍ଡପ ସାହି ବାଟ ଦେଇ ପୁଣି ବଡ଼ ଦେଉଳର ଦ୍ୱାର ପାଖକୁ ଆସି ବଡ଼ ଦାଣ୍ଡରେ ଗୁଣ୍ଡିଚାଘର ପର୍ଯ୍ୟନ୍ତ ଆପଣ ଯାଇପାରନ୍ତି । ବଡ଼ଦାଣ୍ଡ ପ୍ରକୃତରେ ବଡ଼ ଠାକୁରଙ୍କର ସେବକ ବିରାଟ ଓଡ଼ିଆ ଜାତିର ବଡ଼ ଭାବନା ଓ ବଡ଼ ହୃଦୟର ପ୍ରତୀକ । ଯେଉଁ ସହରର ଲୋକସଂଖ୍ୟା ୧୯୭୬ରେ ମଧ୍ୟ ଏକ ଲକ୍ଷରୁ କମ୍, ସେହି ପୁରୁଣା କାଳିଆ ସହରରେ ଏଭଳି ଏକ ବିଶାଳ ଦାଣ୍ଡ ଅଛି ବୋଲି ନ ଦେଖିଲେ ବିଶ୍ୱାସ କରି ହେବ ନାହିଁ । ଏହି ଦାଣ୍ଡଟି ଶେଷ ହୋଇଛି ଗୁଣ୍ଡିଚା ମନ୍ଦିରଠାରେ । ବହୁ ବର୍ଷ ପୂର୍ବେ ଗୋଟିଏ ନଦୀ ବଡ଼ ଦାଣ୍ଡ ଭିତର ଦେଇ ତାକୁ ଦ୍ୱିଖଣ୍ଡ କରି ଚକ୍ରତୀର୍ଥ ପାଖରେ ସମୁଦ୍ରରେ ପଡ଼ୁଥିଲା । ସେତେବେଳେ ରଥଯାତ୍ରା ବେଳେ ତିନି ଦିଅଁଙ୍କ ପାଇଁ ଛଅଟି ରଥ

ହେଉଥିଲା । ସିଂହଦ୍ୱାରରୁ ନଣ୍ଡ ପର୍ଯ୍ୟନ୍ତ ତିନୋଟି ଏବଂ ନଣ୍ଡର ଆରପଟରୁ ଗୁଣ୍ଡିଚାଘର ପର୍ଯ୍ୟନ୍ତ ତିନୋଟି, ଏପରି ଛଅଟି ରଥ ବ୍ୟବହୃତ ହେଉଥିଲା । ହୁଏ ତ, ବେଳେ ବେଳେ ଜଗନ୍ନାଥ ଡଙ୍ଗାରେ ପାରିହେଉଥିଲେ ଏବଂ ସେହି ସ୍ଥାନଟି ସିଂହଦ୍ୱାରଠାରୁ ଗୁଣ୍ଡିଚାଘରର ପ୍ରାୟ ଅର୍ଦ୍ଧପଥରେ ହୋଇଥିବାରୁ ସେ ସ୍ଥାନର ରକ୍ଷକ ରୂପେ ଦେବୀ ପ୍ରତିଷ୍ଠିତ ହୋଇଥିବେ । ବଡ଼ ଦାଣ୍ଡର ଅର୍ଦ୍ଧପଥରେ ଦେବୀଙ୍କର ଆସନ ସ୍ଥିର ହୋଇଥିବାରୁ ହୁଏତ ତାଙ୍କୁ ଅର୍ଦ୍ଧ × ଆସନୀ = ଅର୍ଦ୍ଧାସନୀ ଦେବୀ କୁହାଯାଉଥିବ । ମାତ୍ର ହୁଏ ତ ବାସୁଦେବଙ୍କୁ 'ଅତି ସଂସ୍କୃତ'ରେ 'ବାଂସୁଦେବ' କୁହାଗଲା, ପରି ଅର୍ଦ୍ଧାସନୀ (ଅର୍ଦ୍ଧ ପଥରେ ଆସନ ପାଇଥିବା) ଦେବୀଙ୍କୁ ଅର୍ଦ୍ଧାସନୀ ଦେବୀ କୁହାଯାଉଛି । ଏହି ନାମକରଣରେ ରହସ୍ୟ ଏବେ ବି ଅନ୍ଧକାରଚ୍ଛନ୍ନ ।

## (୧୬) ଜଗନ୍ନାଥବଲ୍ଲଭ ମଠ

ଓଡ଼ିଆ ଜାତିର ଗୌରବକେତନ, ଭକ୍ତପ୍ରବର ଏବଂ ଓଡ଼ିଶାର ଦକ୍ଷିଣ ସୀମାନ୍ତ ରାଜମହେନ୍ଦ୍ରୀଠାରେ ଓଡ଼ିଶାର ରାଜ୍ୟପାଳ ରାୟ ରାମାନନ୍ଦଙ୍କର ସ୍ମୃତି ବିଜଡ଼ିତ ଜଗନ୍ନାଥବଲ୍ଲଭ ମଠ ଗୁଣ୍ଡିଚା-ଘରକୁ ଯିବାବେଳେ ବାମଭାଗରେ ପଡ଼େ । ଜଗନ୍ନାଥ ମନ୍ଦିରର ବିଧିବିଧାନ ସଙ୍ଗେ ନାନା ଭାବରେ ଏହି ମଠଟି ସଂପୃକ୍ତ ।

## (୧୭) ନରେନ୍ଦ୍ର ପୋଖରୀ

ବଡ଼ ଦାଣ୍ଡରୁ (ଜଗନ୍ନାଥବଲ୍ଲଭ ମଠ ପାଖରୁ) ସୁପ୍ରସିଦ୍ଧ ନରେନ୍ଦ୍ର ପୁଷ୍କରିଣୀକୁ ଗଲି ରାସ୍ତା ଅଛି । ଦୈନିକ ଶହ ଶହ ଲୋକ

ଏଠାରେ ସ୍ନାନ କରନ୍ତି । ଜଗନ୍ନାଥ ମହାପ୍ରଭୁ ସମଗ୍ର ଜଗତର ବା ମାନବ ଜାତିର 'ନାଥ' ହୋଇଥିବାରୁ ତାଙ୍କର ସହସ୍ର ସହସ୍ର ସନ୍ତାନ ଏକ ସମୟରେ ତାଙ୍କ ପାଖକୁ ଆସିଗଲେ ଅବଲୀଳା କ୍ରମେ ସେମାନଙ୍କୁ ଖୁଆଇବା ପାଇଁ ଯେପରି 'ମହାପ୍ରସାଦ' ବ୍ୟବସ୍ଥା କରିଛନ୍ତି, ହଜାର ହଜାର ଯାତ୍ରୀ ଆସି ପହଞ୍ଚିଗଲେ, ମୁକ୍ତ ଗଗନ ତଳେ ସେମାନେ ସ୍ନାନ କରିପାରିବା ପାଇଁ ଏଭଳି ପୁଷ୍କରିଣୀର ବ୍ୟବସ୍ଥା କରିଦେଇଛନ୍ତି । ଏଠାରେ ଖରାଦିନେ ଏକୋଇଶ ଦିନ ଧରି ଜଗନ୍ନାଥ ମହାପ୍ରଭୁଙ୍କର ଚନ୍ଦନଯାତ୍ରା ବେଳେ ନୌକାବିହାର ହୁଏ ।

ଗତବର୍ଷର କଥା, ଏଥର ଚନ୍ଦନଯାତ୍ରା ବେଳେ କାହିଁକି ରାତି ତମାମ୍ ଶହ ଶହ ଯୁବକ ଏହି ପୋଖରୀରେ ପହଁରିବାର ଦେଖି ଚାଲି ଆସିଛୁ । ଆଜି ଯେଉଁମାନେ ନୌବାହିନୀରେ ଚାକିରୀ କରୁଛନ୍ତି, ସେମାନଙ୍କୁ ପାଣିରେ ନିଜ ନିଜର ଦେହକୁ ସୁହାଇବା ପାଇଁ ତାଲିମ୍ ଦିଆଯାଇଥାଏ । ନ ହେଲେ ତ ସେମାନେ ରୋଗୀ ହୋଇ-ଯାଆନ୍ତେ । ଓଡ଼ିଆ ଜାତି ବହୁ ଶତାବ୍ଦୀ ଧରି ଜାହାଜ ବ୍ୟବସାୟୀ ଥିଲା ଏବଂ ଲୋକେ ସୁଦୂର ଜାଭା, ବାଲି ପ୍ରଭୃତି ଦ୍ୱୀପକୁ ଯାଉ-ଥିଲେ । ଘଣ୍ଟାଦିନ ଧରି ଯେଉଁମାନେ ପାଣିରେ ରହିବେ ଏବଂ ଦରକାର ହେଲେ ମାଇଲ୍ ମାଇଲ୍ ବାଟ ପହଁରି ପହଁରି ନିଜ ଜୀବନ ବଞ୍ଚାଇବେ ତଥା ଜଳଦସ୍ୟୁ ନିପାତ କରିବେ, ସେମାନଙ୍କର ପାଣିରେ କାଳ କଟାଇବାର ଅଭ୍ୟାସ ଦରକାର । ଖରାଦିନେ ନୌସୈନ୍ୟ ପାଇଁ ଏଠାରେ ଟ୍ରେନିଂ ଦେବାର ଏକ ବ୍ୟବସ୍ଥା ଥିଲା । ସେତେବେଳେ ଚିଲିକାରୁ ନାନା ଧରଣର ଡ୍ଙ୍ଗାବଡ଼ ଜାହାଜ ଦୂର ଦେଶକୁ ଯାଉଥିଲା । ଦେଶହିତକର ଏବଂ ଜାତୀୟ

ପ୍ରଗତିବିଧାୟକ ଅନେକ ସାମାଜିକ ଜିନିଷକୁ ନେଇ ଧର୍ମନୀତି ସୂତ୍ରରେ ଯେପରି ଜଗନ୍ନାଥ ସଂସ୍କୃତି ସହିତ ଯୋଡ଼ିଦିଆଯାଇଥିଲା, ନୌସେନା ତାଲିମ୍‌ର ଆଦର୍ଶ ସେହିପରି ହୁଏ ତ ଏହି ବାଟରେ ଯୋଡ଼ିଦିଆଯାଇଥିଲା । ଉପେନ୍ଦ୍ର ଭଞ୍ଜ ତାଙ୍କ ରସିକହାରାବଳୀ କାବ୍ୟର ୩ୟ ଛାନ୍ଦରେ ଏହି ପୋଖରୀ ଓ ଚନ୍ଦନଯାତ୍ରାର ସୁନ୍ଦର ବର୍ଣ୍ଣନା କରିଛନ୍ତି ।

## (୧୮) ଜଟିଆବାବା ଆଶ୍ରମ

ନରେନ୍ଦ୍ର ପୋଖରୀର ଉତ୍ତର ତୀରରେ ଜଟିଆବାବା ସମାଧି-ମନ୍ଦିର । ଏହାର ବେଢ଼ା ଭିତର ପରିଷ୍କାର ପରିଚ୍ଛନ୍ନ ଏବଂ ଧ୍ୟାନ କରିବାଲାଗି ଉପଯୁକ୍ତ ସ୍ଥାନ ।

## (୧୯) ବ୍ରହ୍ମଚାରୀ ସମାଧି ମନ୍ଦିର

ଜଟିଆବାବାଙ୍କୁ ଲାଗିକରି ବ୍ରହ୍ମଚାରୀ ସମାଧି ମନ୍ଦିର । ଏ ଦୁଇଟି ମଠରେ ବ୍ରହ୍ମଚିନ୍ତିକୁ ଯାଉଥିବା ରାସ୍ତାଟି ଅଛି । ଏ ମନ୍ଦିରର ବୟସ ପଚିଶ ବର୍ଷରୁ ବେଶୀ ନୁହେଁ । କଦଳୀ ପତ୍ର ରଙ୍ଗର ପଥରରେ ତିଆରି ଏହି ମନ୍ଦିରଟି ସୁନ୍ଦର ଭାବରେ ପରିଷ୍କାର ପରିଚ୍ଛନ୍ନ । ମନ୍ଦିରର କାନ୍ଥରେ ଖୋଦିତ ହାତୀ ଏବଂ ବିଭିନ୍ନ ଦେବଦେବୀଙ୍କ ମୂର୍ତ୍ତିର ପଥରଶିଳ୍ପୀମାନଙ୍କର ସିଦ୍ଧହସ୍ତତା ପ୍ରମାଣ କରୁଅଛି ।

## (୨୦) ଗୁଣ୍ଡିଚା ଘର

ରଥଯାତ୍ରା ବେଳେ ଜଗନ୍ନାଥେ ଏଠାରେ (ଯିବାଆସିବା ଦୁଇ ଦିନ ମିଶି) ନଅ ଦିନ ରହନ୍ତି । ଶରୀରର ନଅ ଦ୍ୱାର, ନବଧା

ଭକ୍ତି, ନବ ରସ ଇତ୍ୟାଦି ଇତ୍ୟାଦି ମାଧ୍ୟମରେ ନଅ ସଂଖ୍ୟା ଖୁବ୍ ଜନପ୍ରିୟ । ଗୋଟିକିଆ ସଂଖ୍ୟାର ଶେଷ ସଂଖ୍ୟା ହେଉଛି ନଅ । କାରଣ ତା'ପରେ ସେଇ ନଅ ଭିତରୁ ଏକାଧିକ ମିଶି ଅନ୍ୟ ସଂଖ୍ୟା ହୁଏ । କାହିଁକି ନଅ ଦିନ ହେଲା, କହି ନ ହେଲେ ମଧ୍ୟ ଜଗନ୍ନାଥ-ଙ୍କର ବିଗ୍ରହ ଇନ୍ଦ୍ରଦ୍ୟୁମ୍ନଙ୍କଦ୍ୱାରା ପ୍ରଥମେ ସେଠାରେ ପୂଜିତ ହୋଇଥିବାରୁ ସେଇ ସ୍ଥାନଟିକୁ 'ଜନକପୁର' (ବା ଜନ୍ମସ୍ଥାନ) କୁହାଯାଏ । ଜଗନ୍ନାଥେ ପ୍ରତିବର୍ଷ ସେଠାକୁ ନଅ ଦିନ ପାଇଁ ଯିବାର ବିଧି ଥିବାରୁ ଲୋକେ କହନ୍ତି, ଜଗନ୍ନାଥ ସଂସ୍କୃତି ମନୁଷ୍ୟଙ୍କୁ ଉପ-ଦେଶ ଦେଇ କହୁଛି, "ତୁମେ ଯେଉଁଠାରେ କାମ କରିବ କର, କିଛି ଆପତ୍ତି ନାହିଁ । ମାତ୍ର ଜନ୍ମଭୂମିକୁ ଭୁଲି ନ ଯାଇ ବର୍ଷକରେ ଅନ୍ତତଃ ନଅ ଦିନ ପାଇଁ ଜନ୍ମସ୍ଥାନକୁ ଯିବା ଦରକାର ।" କାରଣ—

ଜନନୀ ଜନ୍ମଭୂମିଶ୍ଚ
ସ୍ୱର୍ଗାଦପି ଗରୀୟସୀ ।
ବୈଦେଶିକମାନଙ୍କୁ ଭିତରକୁ ଛଡ଼ାଯାଏ ନାହିଁ ।

## (୨୧) ଜୟଦେବଙ୍କ ଦଶାବତାର ମନ୍ଦିର

ଗୁଣ୍ଡିଚା ଘର ଦ୍ୱାରମୁହଁରେ ଯେଉଁ ଦୁଇ ବୃକ୍ଷଟି ବଡ଼ ଗଛ ଠିଆହୋଇଛି, ତାର ମୂଳରେ ଓଡ଼ିଆ ଜାତିର ପରମପ୍ରିୟ ଜୟଦେବଙ୍କର ଦଶାବତାର ମନ୍ଦିର ଭଙ୍ଗା ଅବସ୍ଥାରେ ପଡ଼ିଛି । ବିଶ୍ୱାସ କରାଯାଏ, ଜୟଦେବ ଏହି ମନ୍ଦିରର ଦଶାବତାର ମୂର୍ତ୍ତିଙ୍କୁ ଆଖି ଆଗରେ ରଖି, ଗୀତଗୋବିନ୍ଦ ଅନ୍ତର୍ଗତ ସୁବିଖ୍ୟାତ ଦଶା-

ବଡାର ବନ୍ଦନା ଲେଖିଥିଲେ । ଅବହେଳିତ ଅବସ୍ଥାରେ ପଡ଼ିରହି-ଥିବା ମନୋରମ ମୂର୍ତ୍ତିଗୁଡ଼ିକ ଦେଖିଲେ ମନ ଦୁଃଖପୂର୍ଣ୍ଣ ହୋଇଯାଏ । ଜାଣି ଗୃହିଁଲେ କ'ଣ ମୂର୍ତ୍ତିଗୁଡ଼ିକୁ ପୁଣି ଥରେ ଜୀବନ୍ତ ଭାବରେ ସେଇ ସ୍ଥାନରେ ପୂଜା କରିହେବ ନାହିଁ ?

## (୨୨) ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ

ଗୁଣ୍ଡିଚା ଘରର କାନ୍ଥ କଡ଼େ କଡ଼େ ଯେଉଁ ରାସ୍ତା ଆହୁରି ଆଗକୁ ଯାଇଛି, ସେ ରାସ୍ତାରେ ଟିକିଏ ବାଟ ଗଲେ ପୁରାଣପ୍ରସିଦ୍ଧ ଇନ୍ଦ୍ରଦ୍ୟୁମ୍ନ ପୋଖରୀ ପଡ଼ିବ । କଥିତ ଅଛି ଯେ, ରାଜା ଇନ୍ଦ୍ରଦ୍ୟୁମ୍ନ ଗୋଟାଏ ବିରାଟ ଯଜ୍ଞ କରିଥିଲେ ଏବଂ ସେଥିକବେଳେ ଗୋରୁ-ମାନଙ୍କର ଖୁରାଘାତ ଖୋଳହୋଇ ଏହି ପୁଷ୍କରିଣୀ ଜନ୍ମଲାଭ କରିଥିଲା । ଏଥିରେ ଯେଉଁ ବଡ଼ ବଡ଼ କଇଁଛ ଅଛନ୍ତି, ସେମାନେ ଶହ ଶହ ବର୍ଷ ଧରି ରହିଛନ୍ତି ବୋଲି କୁହାଯାଇଥାଏ ।

## (୨୩) ସିଦ୍ଧ ମହାବୀର

ପୋଖରୀରୁ ରାସ୍ତାକୁ ଫେରିଆସି ଆଉ ଟିକିଏ ଆଗକୁ ଗଲେ ରେଳ ଲାଇନ୍ ପଡ଼ିବ ଏବଂ ରେଳ ଲାଇନ୍‌ଠାରୁ ପ୍ରାୟ ଦୁଇ ଶହ ହାତ ଯିବା ପରେ ଟିକିଏ ଡାହାଣକୁ ଗଲେ ଗୋଟିଏ ସରୁଆ ବାଟରେ ଯାଇ ସିଦ୍ଧ ମହାବୀର ମନ୍ଦିରରେ ପହଞ୍ଚିବାକୁ ହୁଏ । ମନ୍ଦିରରେ ବିଶାଳକାୟ ମହାବୀର ମୂର୍ତ୍ତି ପୂଜା ପାଉଛନ୍ତି । ବେଢ଼ା ଭିତରଟି ଖୁବ୍ ଜମିଳ । ବଣଭୋଜି (picnic) କରିବା ପାଇଁ ମଧ୍ୟ ସ୍ଥାନଟି ଉପଯୁକ୍ତ ।

# ଆଉ କେତୋଟି ଦର୍ଶନୀୟ ସ୍ଥାନ

## (୧) ସୁନାର ଗୌରାଙ୍ଗ

ଏହି ମଠର ରେଲୱେ ହୋଟେଲଠାରୁ ପୂର୍ବକୁ ପଡ଼ିଥିବା ରାସ୍ତାରେ ପ୍ରାପ୍ୟ ଦଶ ମିନିଟର ଚାଲିବାଟ ପଡ଼େ ।

## (୨) ଚକ୍ରତୀର୍ଥ

ସେଇ ସୁନାର ଗୌରାଙ୍ଗ ପାଖାପାଖି ସମୁଦ୍ର କୂଳରେ ଅବସ୍ଥିତ । ଯେଉଁ ଦାରୁରେ ଜଗନ୍ନାଥଙ୍କ ବିଗ୍ରହ ପ୍ରଥମେ ନିର୍ମିତ ହୋଇଥିଲା ସେଇ ଦାରୁ (କାଠ) ସର୍ବପ୍ରଥମେ ଏହି ସ୍ଥାନରେ ଆସି ଲାଗିଥିଲା ବୋଲି କୁହାଯାଇଥାଏ ।

## (୩) ମାର୍କଣ୍ଡେୟ ପୋଖରୀ

ତୀର୍ଥଯାତ୍ରୀଙ୍କ ସ୍ନାନ ନିମନ୍ତେ ଏହା ଏକ ପ୍ରସିଦ୍ଧ ପୁଷ୍କରଣୀ । ବଡ଼ଦାଣ୍ଡରେ ଠିଆହୋଇଥିବା ପ୍ରକାଣ୍ଡ ଦୁଦ୍‌ବାଲ୍ ଧର୍ମଶାଳା ପଛ ଆଡ଼କୁ ଏହି ପୁଷ୍କରଣୀ ଅବସ୍ଥିତ ।

## (୪) ମଧ୍ୱାଚାର୍ଯ୍ୟଙ୍କ ଆସ୍ଥାନ

ଶଙ୍କରାଚାର୍ଯ୍ୟ ଯେପରି ଅଦ୍ୱୈତବାଦ ଲାଗି ପ୍ରସିଦ୍ଧ, ମଧ୍ୱାଚାର୍ଯ୍ୟ ସେହିପରି ଦ୍ୱୈତବାଦର ପ୍ରତିଷ୍ଠାପକ ଭାବରେ ପ୍ରସିଦ୍ଧ । ତାଙ୍କର ପବିତ୍ର ସ୍ମୃତି ବିଜଡ଼ିତ ଏହି ପୀଠ ମାର୍କଣ୍ଡେୟ ପୁଷ୍କରଣୀ ନିକଟରେ ଅଛି ।

## (୫) ନନ୍ଦିନୀ ମଠ

ଏହି ମଧୁପୀଠର ଅଦୂରରେ ମାର୍କଣ୍ଡେଶ୍ୱର ସାହି ଆଡ଼କୁ ନନ୍ଦିନୀ ମଠ ଅଛି । ଭାରତବିଖ୍ୟାତ ଭକ୍ତକବି ମୀରାବାଈ ଏହି ମଠରେ ରହୁଥିବାର କଥିତ ଅଛି । ମଠର ଅବସ୍ଥା ଆଦୌ ଭଲ ନଥିଲେ ମଧ୍ୟ ଭିତରେ ପୂଜା ପାଉଥିବା କୃଷ୍ଣମୂର୍ତ୍ତି ଏକାବେଳକେ ଲୋଭନୀୟ ।

## (୬) ଘୁମୁସର ମଠ

ଦୁଦ୍‌ବାଲ୍ ଧର୍ମଶାଳା ପାଖରୁ, ବଡ଼ଦାଣ୍ଡରୁ ପୁରୀ କଲେଜ ଆଡ଼େ ଯେଉଁ ରାସ୍ତା ଯାଇଛି, ସେଇ ରାସ୍ତା ଉପରେ ବଡ଼ଦାଣ୍ଡରୁ ପ୍ରାୟ ଦୁଇ ତିନ ମିନିଟ୍‌ର ବାଟ ଗଲେ, ତାହାର ପଟେ ଘୁମୁସର ମଠ ପଡ଼ିବ । ଓଡ଼ିଆ କବିସମାଜର ମଉଡ଼ମଣି କବି-ସମ୍ରାଟ ଉପେନ୍ଦ୍ର ଭଞ୍ଜ ହିଁ ଏ ତ ବୈଦେହୀଶ ବିଳାସ ଲେଖିବା ବେଳେ ରାମ ଲକ୍ଷ୍ମଣ ସୀତାଙ୍କର ଯେଉଁ ପିତଳ ମୂର୍ତ୍ତି ବସାଇଥିଲେ ଏହି ମଠରେ ସେସବୁ ପୂଜା ପାଉଛନ୍ତି ।

## ଭକ୍ତ ଓ ପର୍ଯ୍ୟଟକଙ୍କ ପାଇଁ ଅନ୍ୟ ଆକର୍ଷଣ

## ପିପିଲି ଚାନ୍ଦୁଆ

ଭୁବନେଶ୍ୱରରୁ ପୁରୀ ହେଉଛି ଛତିଶ ମାଇଲ୍ । ଭୁବନେ-ଶ୍ୱରରୁ ପ୍ରାୟ ବାର ମାଇଲ ଗଲେ ପଡ଼ିବ ପିପିଲି । ପିପିଲିଠାରୁ ରାସ୍ତା ଦୁଇ ଭାଗ ହୋଇଯାଇଛି । ସିଧା ରାସ୍ତାରେ ଚବିଶ ମାଇଲ୍

ଗଲେ ପୁରୀ ପଡ଼ିବ ଏବଂ ପିପିଲିଠାରୁ ବାମପଟେ ତେସ୍ତାଳିଶ କି.ମି. ଗଲେ କୋଣାର୍କ ପଡ଼ିବ । ପୁରୀ ଏବଂ କୋଣାର୍କ, ଯଦିଓ ଦୁଇଟିଯାକ ସ୍ଥାନ ସମୁଦ୍ର କୂଳରେ ଅବସ୍ଥିତ, ତଥାପି ସେ ଦୁଇଟିକୁ ସମୁଦ୍ର କୂଳେ କୂଳେ ଦୁଇଟିକୁ ସଂଯୋଗ କରିଥିବାର କୌଣସି ରାସ୍ତା ନଥିଲା । ଏବେ ସରକାର ସମୁଦ୍ର କୂଳେ କୂଳେ ରାସ୍ତା ପକାଇବାକୁ ସମର୍ଥ ହୋଇଛନ୍ତି । କୋଣାର୍କଠାରୁ ୩୦ କି.ମି. ରାସ୍ତା ପୁରୀ ପର୍ଯ୍ୟନ୍ତ । ଏହା ଏପରି ସୁନ୍ଦର ହୋଇଛି ଯେ, ବିଭିନ୍ନ ଦେଶର ପର୍ଯ୍ୟଟକମାନେ ଓଡ଼ିଶାର ସୌନ୍ଦର୍ଯ୍ୟର ଉଚ୍ଚ ପ୍ରଶଂସା କରୁଛନ୍ତି । ଏହି ନୂଆ ରାସ୍ତାର ନାମ ବେଳାମାର୍ଗ ବା Marine Drive ।

ପିପିଲିର ଚାନ୍ଦୁଆ ଆଜି ବିଶ୍ୱବିଖ୍ୟାତ ହୋଇଯାଇଛି । ଚାନ୍ଦୁଆ ସାଙ୍ଗକୁ ଦେବତାଙ୍କ ପାଇଁ ଆଗେ ଛତି ତିଆରି ହେଉଥିଲା । ଏବେ ସେଇ ଛତିକୁ ବଡ଼ ବଡ଼ ହୋଟେଲର ବଗିଚାରେ ପୋତି, ତା ତଳେ ବସି, ଚା ଖାଇବାକୁ ବିଳାସୀ ଲୋକେ ଖୁବ ପସନ୍ଦ କରୁଛନ୍ତି । ନାରୀମାନେ ବ୍ୟବହାର କରିବା ପାଇଁ ହାତମୁଣି (Vanity bag), ଛତା, ଖଟ ଓ ଟେବୁଲ ଉପରେ ପକାଇବା ପାଇଁ ଚାଦର (Table cloth, Bedcover )ଓଡ଼ିଶାର ପୁରୁଣା ଧରଣର ବଟୁଆ, ବିଜୁଳି ଆଲୁଅର ଖୋଳ, ଶାଢ଼ି ରଖିବା ପାଇଁ କନାମୁଣି ଇତ୍ୟାଦି ଇତ୍ୟାଦି ସେଇ ଚାନ୍ଦୁଆ କୌଶଳରେ ନିର୍ମାଣ କରାଯାଇ ବିକ୍ରି ହେଉଛି । ଇଂରାଜୀରେ ଏହି କଳାକୁ Applique art କୁହାଯାଏ ।

## ସାକ୍ଷୀଗୋପାଳ

ପିପିଲିଠାରୁ ପୁରୀ ରାସ୍ତାରେ ଆଉ ପ୍ରାୟ ବାଇଶ କି.ମି. ଗଲେ ସାକ୍ଷୀଗୋପାଳ ପଡ଼ିବ । ଏହାକୁ ସତ୍ୟବାଦୀ ମଧ୍ୟ କୁହା-

ଯାଏ । ରାସ୍ତାରୁ ସଡ଼କ ଓ ସହରଟି ଆରମ୍ଭ, ତଥାପି ଜାହାଣପଟକୁ ପ୍ରାୟ ଦୁଇ କି.ମି. ଗଲେ ପ୍ରସିଦ୍ଧ ସାକ୍ଷୀଗୋପାଳ ମନ୍ଦିର ପଡ଼ିବ । ଏ ମନ୍ଦିରରେ ମନୋରମ ଶ୍ରୀକୃଷ୍ଣ ମୂର୍ତ୍ତି ପୂଜା ପାଉଛନ୍ତି । ମନ୍ଦିରର ଖୁବ୍ ପାଖରେ ଉତ୍କଳମଣି ଗୋପବନ୍ଧୁଙ୍କର ସତ୍ୟବାଦୀ ବନବିଦ୍ୟାଳୟର ସ୍ମାରକ 'ବକୁଳ ଝୁରିଆନା ବନ' ରହିଛି । ଯେପରି ବିଷ୍ଣୁଭକ୍ତ ପକ୍ଷରେ ସାକ୍ଷୀଗୋପାଳ ମନ୍ଦିର ଅବଶ୍ୟ ଦର୍ଶନୀୟ, ସେହିପରି ଭାରତମାତାକୁ ଯେଉଁମାନେ ଭକ୍ତି କରନ୍ତି, ସେମାନଙ୍କ ପକ୍ଷରେ ପୁଣ୍ୟଶ୍ଲୋକ ଓ ପୁଣ୍ୟାତ୍ମା ଗୋପବନ୍ଧୁ ତଥା ତାଙ୍କ ସଖାମାନଙ୍କର ସ୍ମୃତି ବିଜଡ଼ିତ ଏହି ବକୁଳବନ ଅବଶ୍ୟ ଦର୍ଶନୀୟ ।

ସାକ୍ଷୀଗୋପାଳର ଇତିକଥା ଦୁଇ ଭାଗରେ ବିଭକ୍ତ । ପ୍ରଥମଟି କିମ୍ବଦନ୍ତୀମୂଳକ ଏବଂ ଦ୍ୱିତୀୟଟି ଐତିହାସିକ ।

କିମ୍ବଦନ୍ତୀ କହେ, ଥରେ ଦୁଇ ଜଣ ବ୍ରାହ୍ମଣ କଳି କରିବାରୁ କାହା କଥା ଠିକ୍, ସେ କଥାର ସାକ୍ଷ୍ୟ ଦେବା ପାଇଁ ସୁଦୂର ମଥୁରାରୁ ଅଞ୍ଚଳରୁ ଶ୍ରୀକୃଷ୍ଣ ଦକ୍ଷିଣ ଭାରତର କାଞ୍ଚୀପୁର ପର୍ଯ୍ୟନ୍ତ ଯାଇଥିଲେ । ଯେଉଁ ବ୍ରାହ୍ମଣ ଜଣକର ଅନୁରୋଧରେ ଗୋପାଳ (ଶ୍ରୀକୃଷ୍ଣ) ରାଜାଙ୍କ ଆଗରେ ସାକ୍ଷ୍ୟ ଦେବାକୁ ଯାଉଥିଲେ, ତାଙ୍କୁ ସେ କହିଥିଲେ—"ତୁମେ ଆଗେ ଆଗେ ଚାଲ, ତୁମ ପଛେ ପଛେ ମୁଁ ଯିବି । ତୁମେ ମୋତେ ପଛକୁ ଚାହିଁବ ନାହିଁ ।"

କିନ୍ତୁ କୌଣସି କାରଣରୁ ବ୍ରାହ୍ମଣ ଜଣକ ପଛକୁ ଚାହିଁଦେଲା—ହୁଏତ ମନରେ ସନ୍ଦେହ ହେଲା, ମହାପ୍ରଭୁ ଗୋପାଳ

କେଉଁଠାରେ ରହିବଟଲେ କି ? ଫଳରେ ଗୋପାଳ ଆଉ ଚଳିଲେ ନାହିଁ । ବ୍ରାହ୍ମଣ ଆସି ଦେଖନ୍ତି ତ, ମହାପ୍ରଭୁଙ୍କର ଦେହ ପଥର ହୋଇଯାଇଛି ଏବଂ ବେଣୁବାଦକ ଗୋପାଳ ଭାବରେ ସେ ଠିଆ ହୋଇଛନ୍ତି । କାଞ୍ଚୀର ରାଜା ଏସବୁ ଜାଣିବା ପରେ ସେଇ ଗୋପାଳ ମୂର୍ତ୍ତିକୁ ନେଇ ମନ୍ଦିରରେ ପ୍ରତିଷ୍ଠା କଲେ ଏବଂ ପୂଜା କଲେ ।

ଆମର ଇତିହାସ କହେ, ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାର ରାଜା ଦାକ୍ଷିଣାତ୍ୟ ଯୁଦ୍ଧରେ ଜୟ କରି ଏହି ମୂର୍ତ୍ତିକୁ ଆଣିଥିଲେ ଏବଂ କଟକ ବାରବାଟୀ ଦୁର୍ଗରେ ପ୍ରତିଷ୍ଠା କରି ପୂଜା କରୁଥିଲେ । ଚୈତନ୍ୟଦେବ ସେଠାରେ ମୂର୍ତ୍ତିକୁ ପୂଜା କରିଥିଲେ । କିଛିଦିନ ପରେ ଓଡ଼ିଶାର ପତନ ହେଲା ଏବଂ ବିଧର୍ମୀମାନଙ୍କ ଆକ୍ରମଣ ଫଳରେ ଏ ମୂର୍ତ୍ତିକୁ ଖୋର୍ଦ୍ଧା ନିକଟବର୍ତ୍ତୀ ରଥିପୁରକୁ ନିଆଯାଇ ସେଠାରେ ଏକ ମନ୍ଦିରରେ ନିୟମିତ ପୂଜା ସେବା କରାଗଲା । କିଛି କାଳ ପରେ ସେଠାରେ ମଧ୍ୟ ସେଭଳି ଅସୁବିଧା ହେବାରୁ କାଳୁପଡ଼ା ଷ୍ଟେସନ ନିକଟବର୍ତ୍ତୀ 'କୁନ୍ତଳବାଇ' ନାମକ ସ୍ଥାନକୁ ଏହି ଦେବତାଙ୍କୁ ସ୍ଥାନାନ୍ତରିତ କରାଗଲା ଏବଂ ଯଥାବିଧି ପୂଜା କରାଗଲା । ଆଶ୍ଚର୍ଯ୍ୟର କଥା, କିଛି କାଳ ପରେ ପୁଣି କେତେକ ଅସୁବିଧା ହେବାରୁ ବର୍ତ୍ତମାନ ସେଓଁ ଯେଉଁଠାରେ ଅଛନ୍ତି ସେଠାକୁ ତାଙ୍କୁ ସ୍ଥାନାନ୍ତରିତ କରାଗଲା ଏବଂ ତାଙ୍କ ପାଇଁ ଆଜିର ସୁନ୍ଦର ମନ୍ଦିର ନିର୍ମାଣ କରାଗଲା । ଉତ୍ତରପୂର୍ବ ଭାରତରୁ ବହୁସଂଖ୍ୟକ ଯାତ୍ରୀ ଏଠାକୁ ଆସନ୍ତି । କାର୍ତ୍ତିକ ମାସରେ ଅଁଳାନବମୀ ଦିନ ଏଠାରେ ଭୀଷଣ ଜନଗହଳି ହୁଏ ।

ପୁରୀଠାରୁ ସାକ୍ଷୀଗୋପାଳ ମାତ୍ର ବାର ମାଇଲ । ସୁତରାଂ ପୁରୀ ରହଣି ଭିତରେ ଏଠାକୁ ଆସି, ଦର୍ଶନ ଶେଷ କରି ଫେରିଯିବା ମଧ୍ୟ ସୁବିଧାଜନକ ।



# ପୁରୀର ସମୁଦ୍ରକୂଳ

ପୁରୀ ସହର ସମୁଦ୍ରକୂଳରେ ଅବସ୍ଥିତ । ଯେଉଁ ସମୁଦ୍ରର ପଶ୍ଚିମ ତୀରରେ ପୁରୀ ସହର ଅବସ୍ଥିତ, ତାହାର ନାମହେଉଛି ବଙ୍ଗୋପସାଗର । କିନ୍ତୁ ଆମଲୋକେ ତାକୁ 'ମହୋଦଧି' ବୋଲି କହନ୍ତି ।

ଅତୀତରେ ପୁରୀ ମଧ୍ୟ ଏକ ବନ୍ଦର ଥିଲା । ଗଞ୍ଜାମ ଜିଲ୍ଲାର ସୁନାପୁର, ଗୋପାଳପୁର, ଆର୍ଯ୍ୟପଲ୍ଲୀ (ଛତ୍ରପୁର), ଋଷିକୁଲ୍ୟା ମୁହାଣ (ଗଞ୍ଜାମ ସହର ନିକଟରେ) ପୁରୀ, କୋଣାର୍କ, ଧାମରା, ବୃନ୍ଦପୁର, ତାମ୍ରଲିପ୍ତି (ତମଲୁକ), ଏସବୁ ଥିଲା ପ୍ରାଚୀନ ଓଡ଼ିଶାର ଗୋଟାଏ ଗୋଟାଏ ପ୍ରସିଦ୍ଧ ବନ୍ଦର ।

ତେବେ, ପୁରୀର ସମୁଦ୍ରକୂଳ ସମଗ୍ର ଭାରତ- ବର୍ଷପାଇଁ ଗୋଟାଏ ବିଶିଷ୍ଟ ଆକର୍ଷଣ । ଭାରତର ପଶ୍ଚିମ ଉପକୂଳରେ କେତେଗୁଡ଼ିଏ ସୁନ୍ଦର ସମୁଦ୍ର ତୀର ରହିଛି ଯଥା- ଗୋଆ, ବମ୍ବେ, କୋବଳମ୍ ଇତ୍ୟାଦି । ପୂର୍ବ ସମୁଦ୍ର କୂଳରେ ପଣ୍ଡିଚେରୀ, ମେଡ୍ରାସ୍, ଭାଇଜାକ୍ ଗୋପାଳପୁର, ପୁରୀ, କୋଣାର୍କ, ବୃନ୍ଦପୁର ଦୀଘା ଇତ୍ୟାଦି ରହିଛି । ହେଲେ ସମଗ୍ରଭାରତର ଦୁଇ ତିନୋଟି ସୁନ୍ଦର ବେଳାଭୂମି ଭିତରେ ପୁରୀର ସ୍ଥାନ ରହିଛି । ସ୍ୱର୍ଗଦ୍ୱାର ପାଖରୁ ଚକ୍ରତୀର୍ଥ ଖୁଣ୍ଟି ପର୍ଯ୍ୟନ୍ତ ପ୍ରାୟ ଏକ କିଲୋମିଟର ପୁରୀ ସମୁଦ୍ରତୀରରେ ପକ୍କାରାସ୍ତା ପଡ଼ିଛି । ଏବେ ସ୍ୱର୍ଗଦ୍ୱାରଠାରୁ ପ୍ରାୟ ଦୁଇକିଲୋମିଟର ଦକ୍ଷିଣ ପର୍ଯ୍ୟନ୍ତ ବେଳାଭୂମିର ଉନ୍ନତି ସାଧନ କରାଯିବ ପାଇଁ ପ୍ରସ୍ତାବ ରହିଛି । ସେହିପରି, ଚକ୍ରତୀର୍ଥ ଖୁଣ୍ଟିଠାରୁ ଉତ୍ତର ଦିଗରେ ପ୍ରାୟ ୠ/ଚାରି କିଲୋମିଟର

ସମୁଦ୍ରତୀରର ଉନ୍ନତି ନିମନ୍ତେ ଚିନ୍ତା କରାଯାଉଛି । ତାହାହେଲେ, ଅଳ୍ପ କେତେବର୍ଷପରେ ପ୍ରାୟ ଆଠ କିଲୋମିଟରର ଦୂରର ବେଳାଭୂମି ଅତ୍ୟନ୍ତ ମନୋରମ ହୋଇ ଉଠିବ ।

ଭାରତର କେତେକ ବେଳାଭୂମିରେ ଠିଆହେଲେ ସମୁଦ୍ର ତରଙ୍ଗମାଳା ଆଦୌ ଉପଭୋଗ କରିହୁଏ ନାହିଁ । ବମ୍ବେର ଅନେକ ଅଞ୍ଚଳର ଲୋକେ ଜାଣନ୍ତି ନାହିଁ ଯେ, ସମୁଦ୍ରରେ ବଡ଼ ବଡ଼ ତରଙ୍ଗ ଉଠେ ଏବଂ ଖୁବ୍ ଜୋରରେ ଆସି ଉପକୂଳରେ ପିଟି ହୁଏ । ଆଉ- କେତେକ ସ୍ଥଳରେ ସମୁଦ୍ର ତୀରର ବାଲୁକାମୟ ପ୍ରଦେଶ (ବାଲିବାଲିଆ ଅଞ୍ଚଳ) ଅତ୍ୟନ୍ତ ସରୁଆ । ମାଡ୍ରାସର ସମୁଦ୍ର ତୀରର ବାଲୁକାମୟ ପ୍ରଦେଶ ଏତେ ଓସାରିଆ ଯେ, ସେଠାରେ ଠିଆହେଲେ ଗୋଟିଏ ଛୋଟିଆ ମରୁଭୂମି ପରି ଲାଗେ । କିନ୍ତୁ, ପୁରୀର ସମୁଦ୍ରତଟର ଦୃଶ୍ୟ ଅତ୍ୟନ୍ତ ଚମତ୍କାର । ପ୍ରବଳ ଖରାଦିନେ ଉପରବେଳା ଚାରିଟାରୁ ସନ୍ଧ୍ୟା ସାତଟାପର୍ଯ୍ୟନ୍ତ ସମୁଦ୍ର ତୀରରେ ବସିଗଲେ ଭୋକଶୋଷ ପାସୋରି ଯାଏ । କଲିକତା ଭଳି ଜନ- ଜଙ୍ଗଲରେ ଯେଉଁମାନେ ରହୁଛନ୍ତି, ସେମାନେ ହଜାର ହଜାର ସଂଖ୍ୟାରେ ପୁରୀକୁ ଆସନ୍ତି, କେବଳ ସମୁଦ୍ର ତୀରର ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ । ଦିନ ବାରଟାବେଳୁ ତିନିଟା ପର୍ଯ୍ୟନ୍ତ ସମୁଦ୍ର ତା ପାଣିକୁ ଟାଣି ନିଏ । ସେହି ସମୟରେ ପ୍ରାୟ କୋଡ଼ିଏ ପଚିଶ ହାତ ପର୍ଯ୍ୟନ୍ତ ସମୁଦ୍ର ଭିତର ଆଡ଼କୁ ଯାଇହୁଏ । ପ୍ରାୟ ତିନିଟା ସମୟରୁ ପୁଣି ସମୁଦ୍ର ଫୁଲିଉଠେ । ରାତି ନଅଟାବେଳକୁ ଉପରବାଲିସ୍ତର ପର୍ଯ୍ୟନ୍ତ ଧୀରେ ଧୀରେ ପାଣି ମାଡ଼ିଆସେ । ଗରମ ମୁଢ଼ିଠାରୁ ରସଗୋଲା ପର୍ଯ୍ୟନ୍ତ ପାଣିର ଧାରେ ଧାରେ ବିକ୍ରୀହେଉଥାଏ । ଲୋକଙ୍କର ସ୍ନାନ କରିବାର ଦୃଶ୍ୟ ବଡ଼ ଆକର୍ଷଣୀୟ । ଗାଧୁଆରେ

ସାହାଯ୍ୟ କରିବାକୁ ନୋଳିଆମାନେ ଠିଆହୋଇଥାନ୍ତି । ସମୁଦ୍ରରେ ସ୍ନାନ କରିବାର ଅନୁଭୂତି ପୋଖରୀରେ ମିଳିବ ନାହିଁ । ତେବେ ଗୋପାଳପୁର ପ୍ରଭୃତି ସ୍ଥାନରେ, ଏପରିକି, କୋଣାର୍କ ଠାରେ ମଧ୍ୟ ସମୁଦ୍ରର ତୀରଭୂମି ଗଡ଼ାଣିଆ । ଦଶ/ପନ୍ଦର ହାତ ଭିତରକୁ ଯାଇ ଆଣ୍ଠୁଏ ପାଣିରେ ଠିଆହୋଇଥିବାବେଳେ, ଗୁହୁଁ ଗୁହୁଁ ଯେଉଁ ତରଙ୍ଗ ମାଡ଼ିଆସେ, ତାହା ବେଳେବେଳେ ଜୀବନକୁ ସଙ୍କଟାପନ୍ନ କରିଦିଏ । ପୁରୀସମୁଦ୍ର କୂଳରେ ଏହି ଭୟ ଅପେକ୍ଷାକୃତ କମ୍ । ତେଣୁ ସମୁଦ୍ର ସ୍ନାନ ପାଇଁ ପୁରୀର ଉପକୂଳ ତୀର୍ଥଯାତ୍ରୀ ଏବଂ ପର୍ଯ୍ୟଟକମାନଙ୍କ ନିମନ୍ତେ ବଡ଼ ଆକର୍ଷଣୀୟ ହୋଇଥାଏ । ବେଳେ ବେଳେ ପୁରୀଠାରେ ମଧ୍ୟ 'ଭିତର କାହାଳୀ' ହୁଏ । ଏହା ବଡ଼ ଭୟଙ୍କର । ଆଣ୍ଠୁଏ ପାଣିରେ ଥିବା ଲୋକକୁ ଗୁହୁଁ ଗୁହୁଁ ଟାଣିନେଇ ମାରିଦିଏ । ନୋଳିଆମାନେ ତରଙ୍ଗକୁ ଗୁହିଁ ଏହା ଜାଣିପାରନ୍ତି । ତେଣୁ ତାଙ୍କର ସାହାଯ୍ୟ ନେଇ ଗାଧୋଇ-ଯିବା ଉଚିତ ।

## ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ବିରଳ ଦୃଶ୍ୟ

ପୁରୀ ସମୁଦ୍ରକୂଳ ତଥା କୋଣାର୍କ ସମୁଦ୍ରକୂଳ ଆଉ ଗୋଟିଏ ଦୃଷ୍ଟିରୁ ସମଗ୍ର ଭାରତ କାହିଁକି, ହୁଏତ ସମଗ୍ର ପୃଥିବୀ ପାଇଁ ମଧ୍ୟ ଏକ ବିରଳ ଦୃଶ୍ୟର ସ୍ଥାନ । ଜଗନ୍ନାଥଙ୍କ କୃପାରୁ ମୁଁ ବର୍ଷ ବର୍ଷ ଧରି ହଜାର ହଜାର ବୈଦେଶିକ ତଥା ଭାରତୀୟ ବିଶିଷ୍ଟ ପର୍ଯ୍ୟ-ଟକଙ୍କର 'ଗାଇଡ୍' ଭାବରେ ଏହି ତଥ୍ୟ ଜାଣିବାକୁ କମ୍ବା ଆବିଷ୍କାର କରିବାକୁ ସମର୍ଥ ହେଲି । ଭାରତର ପୂର୍ବ ଉପକୂଳରେ ପୁରୀ ସହର ଠିଆ ହୋଇଛି । ସୂର୍ଯ୍ୟ ପୂର୍ବ ଦିଗରେ ଉଦିତ ହୁଅନ୍ତି ଏବଂ

ପଶ୍ଚିମ ଦିଗରେ ଅସ୍ତ ହୁଅନ୍ତି । ଅନ୍ୟ ଭାବରେ କହିଲେ, ସୂର୍ଯ୍ୟ ଯେଉଁ ଦିଗରେ ଉଦିତ ହୁଅନ୍ତି, ଆମେ ସେ ଦିଗକୁ 'ପୂର୍ବଦିଗ' ବୋଲି ନାମ ଦେଇଛୁ । ପୁଣି ସୂର୍ଯ୍ୟ ଯେଉଁ ଦିଗରେ ଅସ୍ତ ହୁଅନ୍ତି, ଆମେ ସେହି ଦିଗକୁ 'ପଶ୍ଚିମ ଦିଗ' ବୋଲି କହୁଛୁ । କିନ୍ତୁ କୋଣାର୍କର ବେଳାଭୂମିରେ ଠିଆହୋଇ ଆମେ ଯଦି ବର୍ଷର (ଛଅ ଛଅ ମାସ ଛଡ଼ା) ଦୁଇଟି ସମୟରେ ସୂର୍ଯ୍ୟଙ୍କ ଉଦୟ ଦେଖିବା, ତାହାହେଲେ "ପୂର୍ବ ଦିଗରେ ସୂର୍ଯ୍ୟଙ୍କର ଉଦୟ ହୁଏ" ବୋଲି କହିବାକୁ ସାହସ ହେବନାହିଁ । ଏହି ବିଚିତ୍ର ଅନୁଭୂତି ହଜାର ହଜାର ବୈଦେଶିକ ଏବଂ ଭାରତୀୟ ପର୍ଯ୍ୟଟକଙ୍କଠାରେ ମୁଁ ଲକ୍ଷ୍ୟ କରିଛି । କେହି କେହି କହିଛନ୍ତି, "ଆମେପରା ଏବେ ଭାରତର ପୂର୍ବ ବେଳାଭୂମିରେ ଠିଆ ହୋଇଛେ । ତାହାହେଲେ, ତିନୋଟି ସମୁଦ୍ରର ସଙ୍ଗମସ୍ଥଳ କନ୍ୟାକୁମାରୀର ଦୃଶ୍ୟ ଏଠାରେ କିପରି ସମ୍ଭବପର ହୋଇଅଛି ।"

କଥା ହେଉଛି, କୋଣାର୍କ ବେଳାଭୂମିରେ ଏବଂ ପୁରୀର ସମୁଦ୍ର କୂଳରେ ଠିଆହୋଇ ସୂର୍ଯ୍ୟୋଦୟ ଏବଂ ସୂର୍ଯ୍ୟାସ୍ତ ଲକ୍ଷ୍ୟ କଲେ, ଆଶ୍ଚର୍ଯ୍ୟରେ ଅଭିଭୂତ ହେବାକୁ ପଡ଼େ । ବର୍ଷକର ବାରମାସ ଭିତରୁ ପ୍ରାୟ ଦୁଇ ତିନି ମାସ ଏ ଦୃଶ୍ୟ ଦେଖିହୁଏ । ନଭେମ୍ବର ଏବଂ ଡ଼ିସେମ୍ବର ମାସରେ ଆପଣ ପୁରୀ ସମୁଦ୍ର କୂଳରେ ଗୋଟିଏ ସ୍ଥାନରେ ଠିଆ ହୁଅନ୍ତୁ । ଦେଖିବେ, ସମୁଦ୍ର ପାଣିରେ ସୂର୍ଯ୍ୟଙ୍କର ଉଦୟ ହୁଏ ଏବଂ ସମୁଦ୍ରର ପାଣି ଭିତରେ ସୂର୍ଯ୍ୟ ଅସ୍ତ ଯାଆନ୍ତି । ଏହା ବଡ଼ ବିଚିତ୍ର କଥା । ଆପଣ ଭାରତର କମ୍ପା ଓଡ଼ିଶାର ମାନଚିତ୍ର ଦେଖିଲେ ଏଭଳି ଗୋଟାଏ ଅଦ୍ଭୁତ କଥା ଘଟୁଛି ବୋଲି ମୋଟେ ଜାଣିପାରିବେ

ନାହିଁ । ଯେଉଁ ଲୋକ ବର୍ଷ ଭ୍ରମଣ କରନ୍ତି, ତାପାଇଁ ମଧ୍ୟ ପୁରୀ ଏବଂ କୋଣାର୍କ ବେଳାଭୂମିର ଏହି ବିଚିତ୍ର ଘଟଣା ଏକାବେଳକେ ଉପଭୋଗ୍ୟ ।

ପୁରୀ ସମୁଦ୍ରକୂଳରେ ଏବେ (1989) ପିଚୁ ରାସ୍ତା କଡ଼େ-କଡ଼େ ପ୍ରାୟ ଦୁଇ ତିନ ହାତ ଚଉଡ଼ାର ଝାଉଁଗଛ (ଗଛ) ପୋତା ଯାଇଛି । ଆଉ କେତେ ବର୍ଷ ପରେ ଧଳା ବାଲିର କଡ଼େକଡ଼େ ନୀଳ ରଙ୍ଗର ଏହି ଝାଉଁମାଳା ବେଳାଭୂମିର ସୌନ୍ଦର୍ଯ୍ୟ ବର୍ଦ୍ଧନ କରିଇବ ।

ପୁରୀ ସମୁଦ୍ର ତୀରଠାରୁ ଆମେ ଯଦି ସମୁଦ୍ର କୂଳେ କୂଳେ କୋଣାର୍କ ଆଡ଼କୁ ପ୍ରାୟ ସାତ କିଲୋମିଟର ଯିବା, ତାହାଲେ 'ଫୁଲପାଟଣା'ର ଝାଉଁଗଛଭରା ସମୁଦ୍ରକୂଳରେ ପହଞ୍ଚିବା । ପୃଥିବୀର ସୁନ୍ଦର ସୁନ୍ଦର ବେଳାଭୂମି ବା ସମୁଦ୍ରତୀର ଦେଖିଥିବା ଜଣେ ଆମେରି-କାନ୍ ପର୍ଯ୍ୟଟକ କପଟ ସେହିବେଳାଭୂମି ଦେଖି ଆନନ୍ଦ ଗଦ୍‌ଗଦ୍ ହୋଇ ବାଲିରେ ଗଡ଼ି ଯାଇଥିଲେ, ଏହି ଲେଖକ ସ୍ୱଚକ୍ଷୁରେ ତାହା ଦେଖିଛି । ଏହି ପୁସ୍ତକର ୮୧ ପୃଷ୍ଠାରେ ପାଠକମାନେ ତାହା ପଢ଼ି ପାରନ୍ତି ।

ଏସବୁ ଛଡ଼ା ଅନେକ ସମୟରେ, ଧଳା ଢେଉ ମାଳା ଉପରେ, ଡାହାଣରୁ ବାମ ଆଡ଼କୁ, ତୀର ବେଗରେ ଯେଉଁ ଛଡ଼ର୍

ପ୍ରବାଦ ଭଳି (ଶର ମାରିଲା ପରି) ଏକ ବିଚିତ୍ର ଦୃଶ୍ୟ ଦେଖିବାକୁ ମିଳେ, ତାହା ଉପଭୋଗ୍ୟ । ଭାରତର ସବୁ ସ୍ଥାନର ସମୁଦ୍ରରେ ଏପରି ହୁଏନାହିଁ ବୋଲି ମଧ୍ୟ ଶୁଣିଛି ।



# ଜଗନ୍ନାଥ ଧର୍ମରେ ସମନ୍ୱୟ

ଜଗନ୍ନାଥଙ୍କର ଆଦିମ ଇତିହାସ ଏପର୍ଯ୍ୟନ୍ତ ରହସ୍ୟାବୃତ ହୋଇ ରହିଛି । 'ପୁରୁଷୋତ୍ତମ କ୍ଷେତ୍ର' ସମ୍ପର୍କରେ ଲୋକକଥା, ପରମ୍ପରା ଓ ପୌରାଣିକ ବିଷୟବସ୍ତୁ ସମ୍ପୂର୍ଣ୍ଣ ଏକମତ ନୁହନ୍ତି । ଖ୍ରୀ.ପୂ. ୩ୟ ଶତାବ୍ଦୀରୁ ଅର୍ଥାତ୍ ଅଶୋକଙ୍କ ସମୟରୁ ବୌଦ୍ଧଧର୍ମ ଓଡ଼ିଶାଭୂମିରେ ଦୃଢ଼ୀଭୂତ ହୋଇଥିବା ଇତିହାସର ବିଷୟ ହୋଇ ରହିଛି । ବୌଧାୟନ-ଧର୍ମସୂତ୍ରରେ କଥିତ ଅଛି ଯେ, କେବଳ ତୀର୍ଥଭ୍ରମଣ ବ୍ୟତୀତ ଅନ୍ୟ କୌଣସି ଉଦ୍ଦେଶ୍ୟରେ ଅଙ୍ଗ, ବଙ୍ଗ ଓ କଳିଙ୍ଗକୁ ଯାତ୍ରା କରିବା ଉଚିତ ନୁହେଁ । ଏଥିରୁ କେହି କେହି ମନେ କରନ୍ତି ଯେ, ସେତେବେଳେ ଏହି ଅଞ୍ଚଳଗୁଡ଼ିକ ବସବାସ-ପାଇଁ ଅପବିତ୍ର ବିବେଚିତ ହେଉଥିଲା । କିନ୍ତୁ ମନରେ ସ୍ୱତଃ ଏ ପ୍ରଶ୍ନ ଉଦିତ ହୁଏ, "ତଥାକଥିତ ଅପବିତ୍ର ଅଞ୍ଚଳମାନଙ୍କରେ ତୀର୍ଥସ୍ଥାନ ଆସିଲା କାହୁଁ ?" ଏହାର ଉତ୍ତର ଯେପରି ସରଳ ସେହିପରି ସୁସ୍ପଷ୍ଟ । ଏହା ନିଃସନ୍ଦେହ ଯେ, ବୌଦ୍ଧଧର୍ମ ପ୍ରସାର ଲାଭ କରିବା ପୂର୍ବରୁ ଅଙ୍ଗ, ବଙ୍ଗ ଓ କଳିଙ୍ଗ ପବିତ୍ର ଭୂମି ଥିଲା । କିନ୍ତୁ ବୌଦ୍ଧଧର୍ମ ଏହି ଅଞ୍ଚଳମାନଙ୍କରେ ପ୍ରସାରଲାଭ କରିବାପରେ ରକ୍ଷଣଶୀଳ ସମ୍ପ୍ରଦାୟର କେତେକ ଲୋକ ଯୁକ୍ତି ବାଢ଼ିଲେ ଯେ ଆର୍ଯ୍ୟାବର୍ତ୍ତର କୌଣସି ଲୋକ ସାଧାରଣତଃ ଏହି ଅଞ୍ଚଳଗୁଡ଼ିକୁ ଯିବ ନାହିଁ; ଯଦି କୌଣସି ବ୍ୟକ୍ତି ସେହି ଅଞ୍ଚଳକୁ ଯିବାକୁ ଚାହୁଁ-ଥାଏ, ତେବେ ସେ କେବଳ ତୀର୍ଥଭ୍ରମଣ ଉଦ୍ଦେଶ୍ୟରେ ସେଠାକୁ

ଯାଇପାରିବ । ବୌଦ୍ଧଧର୍ମ ଅଭ୍ୟୁଦୟର ବହୁପୂର୍ବରୁ କଳିଙ୍ଗର ଧାର୍ମିକ ଗୌରବ ଯେ ସୁପ୍ରତିଷ୍ଠିତ ହୋଇ ସାରିଥିଲା, ସେ ବିଷୟ ବୌଧାୟନ ଧର୍ମସୂତ୍ରର ଏହି ମନ୍ତବ୍ୟ ଦ୍ୱାରା ସମର୍ଥିତ ହେଉଅଛି । କାରଣ, କଳିଙ୍ଗ ପ୍ରକୃତରେ ତୀର୍ଥସ୍ଥାନର ଅସ୍ତିତ୍ୱ ଏହା ଦ୍ୱାରା ସ୍ୱୀକୃତ ହୋଇଅଛି ।

ବଡ଼ କ୍ଷୋଭର ବିଷୟ ଏହି ଯେ, ଜଗନ୍ନାଥଙ୍କ ପ୍ରାଚୀନତା ନିର୍ଣ୍ଣୟ କଲାବେଳେ ଜଗନ୍ନାଥ ପୀଠ ବା ପୁରୁଷୋତ୍ତମ କ୍ଷେତ୍ର ସହିତ ବର୍ତ୍ତମାନର ମନ୍ଦିରଟିକୁ ଅବଚ୍ଛେଦ୍ୟ ଭାବରେ ଯୋଡ଼ି ଦିଆ-ଯାଇଥାଏ । ସୁଦୂର ଅଜ୍ଞାତ କାଳରୁ ଏହି ପୀଠର ଅସ୍ତିତ୍ୱ ବିଦ୍ୟମାନ । କିନ୍ତୁ ଇତିହାସରୁ ଜଣାଯାଏ ଏହି ପୀଠରେ ବିଭିନ୍ନ ସମୟରେ ବିଭିନ୍ନ ମନ୍ଦିର ନିର୍ମିତ ହୋଇଛି । କଥିତ ଅଛି ଯେ ରାଜା ଇନ୍ଦ୍ରଦ୍ୟୁମ୍ନ ୧,୦୦୦ ହାତ ଉଚ୍ଚତା ବିଶିଷ୍ଟ 'ଜଗନ୍ନାଥ ମନ୍ଦିର' ନିର୍ମାଣ କରାଇଥିଲେ । ଜଗନ୍ନାଥ ମନ୍ଦିରରେ ମୂର୍ତ୍ତିଦ୍ୱୟର ସ୍ଥାପନ ସହିତ ଇନ୍ଦ୍ରଦ୍ୟୁମ୍ନଙ୍କ ନାମ ଅବିଚ୍ଛିନ୍ନ ଭାବେ ଜଡ଼ିତ । ସଂସ୍କୃତ ସାହିତ୍ୟ ଅଧ୍ୟୟନ କରିଥିବା ବ୍ୟକ୍ତିମାନେ ଜାଣନ୍ତି ଯେ 'ଏକଶତ' ଓ 'ଏକ ସହସ୍ର', ଏହି ଶବ୍ଦ ଦୁଇଟି ଏକ ନିର୍ଦ୍ଦିଷ୍ଟ ସଂଖ୍ୟା ବୁଝାଇବା ଭଳି ଜଣାଗଲେ ମଧ୍ୟ 'ବହୁତ' ଅର୍ଥରେ ମଧ୍ୟ ସେ ଦୁଇଟି ବ୍ୟବହୃତ । ଦୃଷ୍ଟାନ୍ତ ସ୍ୱରୂପ, 'ପଦ୍ମ'ର ପର୍ଯ୍ୟାୟବାଚକ ଶବ୍ଦ-ମାନଙ୍କର ଉଲ୍ଲେଖ ପ୍ରସଙ୍ଗରେ ପ୍ରସିଦ୍ଧ 'ଅମର-କୋଷ' ଲେଖିଛନ୍ତି :—

'ସହସ୍ର ପତ୍ରଂ କମଳଂ
ଶତପତ୍ରଂ କୁଶେଶୟମ୍'

ପଦ୍ମକୁ 'ସହସ୍ର ପତ୍ର' କୁହାଯିବା ସଙ୍ଗେ ସଙ୍ଗେ 'ଶତ ପତ୍ର' ମଧ୍ୟ କୁହାଯାଇଛି । ପ୍ରଥମ ନାମରୁ ଜଣାଯାଏ ଯେ, ପଦ୍ମର ଏକ ହଜାର ପାଖୁଡ଼ା ରହିଛି । କିନ୍ତୁ ଦ୍ୱିତୀୟ ନାମରୁ ଜଣାଯାଏ ଯେ, ପଦ୍ମର ଏକଶତ ପାଖୁଡ଼ା ରହିଛି । ତେଣୁ ଶତ ଓ ସହସ୍ର ଶବ୍ଦ ବହୁତ୍ୱ-ବାଚକ ତଥା, ଆକ୍ଷରିକ ଅର୍ଥର ଦ୍ୟୋତକ ଅଟନ୍ତି । ଏହିଭଳି ଭାବରେ ଏକଥା କୁହାଯାଇ ପାରେ ଯେ, ପୁରାଣ ପ୍ରସିଦ୍ଧ ରାଜା ଇନ୍ଦ୍ରଦ୍ୟୁମ୍ନ ଯେଉଁ ମନ୍ଦିରଟି ନିର୍ମାଣ କରିଥିଲେ, ତାହାର ଉଚ୍ଚତା ଠିକ୍ ୧,୦୦୦ ହାତ ନହୋଇ ପାରିଥାଏ । ମାତ୍ର ଏକ ପକ୍ଷରେ ଦେବତାଙ୍କର ମହିମାପୂର୍ଣ୍ଣତା ଓ ଅନ୍ୟପକ୍ଷରେ ରାଜାଙ୍କର ଗୌରବ ଦୃଷ୍ଟିରୁ ଏହି ମନ୍ଦିରଟି ଉତ୍ତୁଙ୍ଗ ଥିବା ଯୁକ୍ତି-ଯୁକ୍ତ ମନେ ହୁଏ । ଭୌଗୋଳିକ ଦୃଷ୍ଟିକୋଣରୁ ବିଚାରକଲେ, ଓଡ଼ିଶା ପୂର୍ଣ୍ଣତଃ ଦକ୍ଷିଣ ଭାରତ ବା ଉତ୍ତର ଭାରତର ଅନ୍ତର୍ଭୁକ୍ତ ନୁହେଁ । ଏହାର ଅବସ୍ଥିତି ଯୋଗୁ ଏହି ରାଜ୍ୟର ଅଧିବାସୀମାନେ ଦକ୍ଷିଣ ଓ ଉତ୍ତର ଭାରତର ସାଂସ୍କୃତିକ ସ୍ରୋତ ମାନଙ୍କର ଘନିଷ୍ଠ ସମ୍ପର୍କରେ ଆସିଥାଆନ୍ତି । ସାଧବ ନାମରେ ପରିଚିତ ଓଡ଼ିଶାର ବଣିକମାନେ ଯେତେବେଳେ ସୁଦୂର ପ୍ରାଚ୍ୟ ସହିତ ସମୁଦ୍ର ପଥରେ ବାଣିଜ୍ୟ କାରବାର କରୁଥିଲେ, ସେହି ସମୟଠାରୁ ଅର୍ଥାତ୍ ପ୍ରାୟ ୨,୦୦୦ ବର୍ଷ ପୂର୍ବରୁ କଳିଙ୍ଗ ସାମ୍ରାଜ୍ୟ ଯଥେଷ୍ଟ ସୁନାମ ଅର୍ଜନ କରିଥିଲା । ଏହି ଭଳି ଭାବରେ କଳିଙ୍ଗ ବା ପ୍ରାଚୀନ ଓଡ଼ିଶାରେ ଏକ ଉଦାର ଓ ସମନ୍ୱୟମୂଳକ ଧାର୍ମିକ ସଂସ୍କୃତିର ଉଦ୍‌ଭବ ସମ୍ଭବପର ହୋଇପାରିଥିଲା ।

ଭାରତରେ ଅନେକ ଧର୍ମ ରହିଛି । ପୁଣି ଶାସ୍ତ୍ରଭିତ୍ତିରେ ପ୍ରତିଷ୍ଠିତ ତଥା ନାନା ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥ ଦ୍ୱାରା ସମର୍ଥିତ ବିବିଧ

ସାମ୍ପ୍ରଦାୟିକ ଦର୍ଶନତତ୍ତ୍ୱମାନ ମଧ୍ୟ ବିଦ୍ୟମାନ ରହିଅଛି ।
ଭାରତର ଅନେକ ସ୍ଥାନରେ ଥିବା ପ୍ରଖ୍ୟାତ ମନ୍ଦିର ଓ ତନ୍ମଧ୍ୟରେ
ସ୍ଥାପନ କରାଯାଇଥିବା ବିଗ୍ରହମାନ କୌଣସି ନା କୌଣସି ଧାର୍ମିକ
ସମ୍ପ୍ରଦାୟ ସହିତ ଏପରି ଘନିଷ୍ଠ ଭାବରେ ସମ୍ପୃକ୍ତ ଯେ, ଅନ୍ୟ
ଧର୍ମାବଲମ୍ବୀମାନେ ସେଠାକୁ ସ୍ୱଚ୍ଛନ୍ଦରେ ଆସିବାପାଇଁ ସ୍ୱତଃ ଆକୃଷ୍ଟ
ହୋଇ ନଥାନ୍ତି । ଦକ୍ଷିଣ ଭାରତରେ ଆଲବାର ଓ ନାୟନ୍ମାର-
ମାନଙ୍କ ମଧ୍ୟରେ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ତୀବ୍ର ମତ ସଙ୍ଘର୍ଷ ଲାଗି
ରହିଥିଲା । ଶୈବ ଓ ବୈଷ୍ଣବମାନେ ପରସ୍ପର ପ୍ରତି ଏତେ
ବୈରଭାବ ପୋଷଣ କରୁଥିଲେ ଯେ, ଜଣେ ବୈଷ୍ଣବଙ୍କୁ ଗୋଟିଏ
ପାଗଳା ହାତୀ ଆକ୍ରମଣ କଲାବେଳେ, ଆତ୍ମରକ୍ଷା ନିମନ୍ତେ
ନିକଟବର୍ତ୍ତୀ ଶିବ ମନ୍ଦିରରେ ଆଶ୍ରୟ ନେବାକୁ ମଧ୍ୟ ସେ ଇଚ୍ଛୁକ
ହେଉ ନଥିଲେ । ଜଣେ ବୈଷ୍ଣବ, ଶିବ ମନ୍ଦିରରେ ଆଶ୍ରୟ ନେବା
ଅପେକ୍ଷା ଆକ୍ରମଣକାରୀ ହାତୀର ପାଦତଳେ ଦଳିତ ହୋଇ
ପ୍ରାଣତ୍ୟାଗ କରିବାକୁ ବରଂ ଶ୍ରେୟସ୍କର ମନେ କରୁଥିଲେ, କାରଣ
ଶିବଙ୍କ ସଂସ୍ପର୍ଶରେ ଆସିବାକୁ ଏକ ଦୂଷ୍ୟ ବା ଅବୈଧ କର୍ମ ବୋଲି
ସେ ମନେକରୁଥିଲେ । ସେହିପରି, ଜଣେ ବୈଷ୍ଣବ ପଣ୍ଡିତ 'ଶିବାତ୍
ପରତରଂ ନାସ୍ତି' ଅର୍ଥାତ୍ 'ଶିବଙ୍କଠାରୁ ବଡ଼ କେହି ନାହାନ୍ତି'—
ଏହି କଥା କହିବାକୁ ମନାକରି ଦେଇଥିଲେ । ଏହି କଥା
କହିବାପାଇଁ ଯେତେବେଳେ ତାଙ୍କୁ ବାଧ୍ୟ କରାଗଲା, ସଙ୍ଗେ ସଙ୍ଗେ
ବିଚକ୍ଷଣ ପ୍ରତ୍ୟୁତ୍ପନ୍ନମତିତାର ସହିତ ସେ ଏହି ଶ୍ଳୋକାଂଶ-କଳ୍ପ
-ବାକ୍ୟର ପାଦ ପୂରଣ କରିବାକୁ ଯାଇ କହିଥିଲେ—

'ଦ୍ରୋଣମସ୍ତି ତତଃ ପରମ୍'

ଅର୍ଥାତ୍ ଦ୍ରୋଣ ତାଙ୍କ ଅପେକ୍ଷା (ଶିବଙ୍କଠାରୁ ମଧ୍ୟ) ବଡ଼
ତେଣୁ ଶିବ ସମସ୍ତଙ୍କଠାରୁ ବଡ଼ ହୋଇ ନ ପାରନ୍ତି) । ଏହାର

ଅର୍ଥ ବୁଝିବାକୁ ହେଲେ ମନେରଖିବାକୁ ହେବ ଯେ, ସଂସ୍କୃତରେ 'ଶିବ' ଓ 'ଦ୍ରୋଣ' ଦୁଇ ପ୍ରକାର ଓଜନର ନାମ । ସାଧାରଣ ପାଠକଙ୍କପାଇଁ ଏହାର ଅର୍ଥ ଅଧିକ ସ୍ପଷ୍ଟ କରିବା ଉଦ୍ଦେଶ୍ୟରେ (ଅଠିକ୍‌ଭାବରେ ହେଉ ପଛେ) ଏଠାରେ ଗୋଟିଏ ଉଦାହରଣ ଦିଆଗଲା । ମନେକରାଯାଉ, ଦୁଇ ପ୍ରକାର ମାପ (ଓଜନ) ରହିଛି । ଗୋଟିଏ ମାପ ଏକ ସେର ବା ଏକ କିଲୋଗ୍ରାମ ସହିତ ସମାନ ଓ ଅନ୍ୟ ମାପଟି ଅଧସେର ବା ଅଧ କିଲୋଗ୍ରାମ୍ ସହିତ ସମାନ । ପାଠକମାନେ ବୁଝିବାପାଇଁ ପ୍ରଥମ ମାପଟିକୁ ଏକ ସେର ବା ଏକ କିଲୋଗ୍ରାମ୍‌କୁ 'ଦ୍ରୋଣ' ଓ ଦ୍ୱିତୀୟ ମାପଟିକୁ 'ଶିବ' କହିଲେ ସୁସ୍ପଷ୍ଟ ହେବ ।

ଶିବଙ୍କୁ ସର୍ବଶ୍ରେଷ୍ଠ କୁହାଯାଇଥିବା ବାକ୍ୟଟିର ଉଚ୍ଚାରଣ ନ କରିବାପାଇଁ, ଶୈବଧର୍ମପ୍ରତି ବିମୁଖ ଥିବା ବୈଷ୍ଣବ ଜଣକ ଏହିଭଳି ଉତ୍ତରଦେଇ, ଶିବଙ୍କ ଗୌରବ ସ୍ୱୀକାର କରିବାର ମହାପାପରୁ (?) ନିଜକୁ ରକ୍ଷା କରିପାରିଥିଲେ !! ଶିବଙ୍କ 'ପ୍ରସାଦ' ବିଷ୍ଣୁଙ୍କ 'ପ୍ରସାଦ' ଅପେକ୍ଷା କିପରି, କାହିଁକି ଓ କେବଠାରୁ ନିକୃଷ୍ଟ (ବା ଅଭକ୍ଷ୍ୟ) ବିବେଚିତ ହୋଇଥିଲା, ତାହା କେବଳ ଶୈବଧର୍ମ ଓ ବୈଷ୍ଣବଧର୍ମର ବିରୋଧ ଭାଗବତ ଇତିହାସରୁ ଜଣାପଡ଼ିବ । ଏହି କଥାଟି ଗୋଟିଏ ସୁପରିଚିତଶ୍ଳୋକର ଏକ ପାଦରେ ପ୍ରତିଫଳିତ ହୋଇଛି, ଯଥା—

'ନ ଗ୍ରାହ୍ୟଂ ଶିବନିର୍ମାଲ୍ୟମ୍'

ବୈଦିକ ଯୁଗରେ ପ୍ରକୃତିର ବିଭିନ୍ନ ଶକ୍ତିକୁ ଦେବତାରୂପେ ପୂଜା କରାଯାଉଥିଲା । ମନୋବାଞ୍ଛା ସିଦ୍ଧି ନିମନ୍ତେ ଉପାସକମାନେ

ସେଗୁଡ଼ିକର ଉପାସନା କରୁଥିଲେ । ଫଳରେ ପୁରାଣବର୍ଣ୍ଣିତ ଦେବତା-ମାନଙ୍କର ଅଭ୍ୟୁଦୟ ଘଟିଲା । ପୁରାଣରେ ଯେଉଁସବୁ ଦେବତାଙ୍କ ବିଷୟରେ ବର୍ଣ୍ଣନା କରାଗଲା, ସେମାନଙ୍କୁ କେନ୍ଦ୍ରକରି ବିବିଧ ପୌରାଣିକ ସାହିତ୍ୟ ସୃଷ୍ଟି କରିପିବାର ଆବଶ୍ୟକତା ଅନୁଭୂତ ହେଲା । ସେହିସବୁ ପୁରାଣସାହିତ୍ୟ ବର୍ତ୍ତମାନ ଭାରତୀୟ ଧର୍ମ-ଜୀବନର ମୂଳପିଣ୍ଡରୂପେ କାର୍ଯ୍ୟ କରୁଛି । ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀର ଶେଷ ଭାଗରେ ଶଙ୍କରାର୍ଯ୍ୟଙ୍କ ଜନ୍ମ ପୂର୍ବରୁ ମାତୃ-ଦେବୀଙ୍କର ଉପାସନା 'ଭାରତୀୟ ମନରେ ଅଶେଷ ପ୍ରଭାବ ବିସ୍ତାର କରିଥିଲା । ଖ୍ରୀଷ୍ଟ ଜନ୍ମର ବହୁ ଶତାବ୍ଦୀ ପୂର୍ବରୁ ଭାରତର ଧର୍ମ ଗଗନରେ ବୌଦ୍ଧଧର୍ମ, ଜୈନଧର୍ମ, ତାନ୍ତ୍ରିକ ଦେବଦେବୀ, ଶିବ ଓ ବିଷ୍ଣୁ ଉଜ୍ଜ୍ୱଳ ଭାବରେ ଉଦ୍ଭାସିତ ହେଉଥିଲେ ।'

ବେଦ ଓ ଗୀତାକୁ ଭିତ୍ତି କରି ହିନ୍ଦୁଧର୍ମ (ଯାହାକୁ କି 'ଭାରତ ଧର୍ମ' ବୋଲି କୁହାଯାଇପାରେ) ପ୍ରତିଷ୍ଠିତ । ବୌଦ୍ଧଧର୍ମ ଓ ଜୈନଧର୍ମ ତାହାର ଦୁଇଟି ଶାଖା ଧର୍ମ ହେଲେ ମଧ୍ୟ ହିନ୍ଦୁଧର୍ମର ପରିସର ବାହାରେ ରହିଥିଲେ । ଏହାର ଏକ ପ୍ରଧାନ କାରଣ ହେଉଛି, ବୌଦ୍ଧ ଓ ଜୈନଧର୍ମ ବେଦର ମହତ୍ତ୍ୱ ସ୍ୱୀକାର କରି ନ ଥିଲେ । ଆକାଶରେ ଯେତେ ସଂଖ୍ୟାରେ ତାରକା ରହିଛନ୍ତି, ଭାରତୀୟ ସାହିତ୍ୟରେ ହୁଏ ତ ସେତିକ ସଂଖ୍ୟକ ଦେବଦେବୀ ସୃଷ୍ଟି କରାଯାଇଛନ୍ତି । ମଣିଷ ସମାଜରେ ଯେ ପର୍ଯ୍ୟନ୍ତ ମାନସିକ ଶକ୍ତି, ମନୋବୃତ୍ତି, ଆଗ୍ରହ ଓ ବୋଧଶକ୍ତି ଇତ୍ୟାଦିର ତାରତମ୍ୟ ଓ ବହୁତ୍ୱ ରହିଥିବ ଏବଂ ଆଧ୍ୟାତ୍ମିକ ଉନ୍ନତିପାଇଁ ଦେବଦେବୀଙ୍କ ଉପାସନାରେ ବିଶ୍ୱାସ କରାଯାଉଥିବ, ସେତେ ଦିନ ପର୍ଯ୍ୟନ୍ତ ଭାରତୀୟ ସାହିତ୍ୟର ବହୁ ଦେବଦେବୀ ସୃଷ୍ଟିକୁ ଅନାବଶ୍ୟକ ବା ଅସଙ୍ଗତ କୁହାଯାଇପାରିବ ନାହିଁ ।

ହିନ୍ଦୁ ସମ୍ପ୍ରଦାୟର ଦେବଦେବୀଙ୍କ ମଧ୍ୟରେ ପାଞ୍ଚଗୋଟି ଦେବ-ଦେବୀ 'ପଞ୍ଚ-ଦେବତା' ସର୍ବାଧିକ ଉଚ୍ଚ ଆସନ ପାଇଥାଆନ୍ତି । ସେମାନେ ହେଲେ ଶିବ, ବିଷ୍ଣୁ, ଦୁର୍ଗା, ଗଣେଶ ଓ ସୂର୍ଯ୍ୟ । ଭାରତର ବହୁ ଲୋକ ଏହି ପାଞ୍ଚୋଟି ଦେବତାଙ୍କ ମଧ୍ୟରୁ ଯେ କୌଣସି ଗୋଟିକୁ ପୂଜା କରନ୍ତି ଓ ଏହାଦ୍ୱାରା ଏକ ନିର୍ଦ୍ଦିଷ୍ଟ ଧର୍ମାବଲମ୍ବୀ ରୂପେ ପରିଣତ ହୁଅନ୍ତି । ତେଣୁ ଜଣେ ନୈଷ୍ଠିକ ବୈଷ୍ଣବ ଶିବଙ୍କର ଉପାସନା କରିବାକୁ ପଶ୍ଚାତ୍‌ପଦ ହେବାର ଦେଖାଯାଏ । ଜଣେ ପ୍ରକୃତ ଶୈବ ବିଷ୍ଣୁଙ୍କର କୌଣସି ରୂପ (ଯଥା ନାରାୟଣ, କୃଷ୍ଣ, ବାଳଗୋପାଳ, ମାଧବ) ଉପାସନା କରନ୍ତି ନାହିଁ । ଅନ୍ୟର ମଧ୍ୟ ଏଭଳି ଅନେକ ଲୋକ ଅଛନ୍ତି, ଯେଉଁମାନେ କି କୌଣସି ପ୍ରକାର ବାଛବିଚାର ନ ରଖି, ଉଦାର ମନୋବୃତ୍ତିରେ ପଞ୍ଚଦେବତାଙ୍କର ପୂଜା କରିଥାଆନ୍ତି । ସେମାନେ 'ସ୍ମାର୍ତ୍ତ' ନାମରେ ପରିଚିତ । ଓଡ଼ିଶାରେ ବହୁ କାଳ ପର୍ଯ୍ୟନ୍ତ ସ୍ମାର୍ତ୍ତମାନଙ୍କର ଆଧି-ପତ୍ୟ ରହିଥିଲା ଓ ସେମାନେ ଦେଶର ଶାସକମାନଙ୍କ ଉପରେ ବିଶେଷ ପ୍ରଭାବ ବିସ୍ତାର କରିଥିଲେ ।

ଭାରତର ପ୍ରଖ୍ୟାତ ଧର୍ମ ପ୍ରଚାରକ ଶଙ୍କରାଚାର୍ଯ୍ୟ ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ପ୍ରଥମ ପାଦରେ ଓଡ଼ିଶାକୁ ଆସିଥିଲେ । ଶୈବ-ଧର୍ମ ସହିତ ଶଙ୍କରାଚାର୍ଯ୍ୟଙ୍କ ନାମ ସାଧାରଣତଃ ସଂଶ୍ଳିଷ୍ଟ । କିନ୍ତୁ ତାଙ୍କର ସ୍ତୋତ୍ରଗୁଡ଼ିକରୁ ଜଣାଯାଏ, ସେ ସମୟରେ ଭାରତରେ ଯେଉଁ ସବୁ ଦେବଦେବୀମାନଙ୍କୁ ବଡ଼ ବୋଲି ଗଣନା କରାଯାଉଥିଲା, ସେମାନଙ୍କୁ ମଧ୍ୟ ଶଙ୍କରାଚାର୍ଯ୍ୟ ପୂଜା କରୁଥିଲେ । ତେଣୁ ଆଚାର୍ଯ୍ୟ ଶଙ୍କରଙ୍କୁ 'ଶୈବ' କୁହାଯାଇ ନ ପାରେ । ସୋମ ବଂଶୀୟ ରାଜା ଯଯାତିଙ୍କ ଆଗମନ ପୂର୍ବରୁ ଓଡ଼ିଶାର ରାଜାମାନେ ଇତିହାସର

ବିଭିନ୍ନ ସମୟରେ ବୌଦ୍ଧଧର୍ମ, ଜୈନଧର୍ମ, ବ୍ରାହ୍ମଣଧର୍ମ, ବୈଷ୍ଣବ ଧର୍ମ ଓ ଶୈବଧର୍ମ ଗ୍ରହଣ କରିଥିବା ନିଶ୍ଚିତଭାବେ ଜଣାଯାଏ । ଯଯାତି ଜଗନ୍ନାଥଙ୍କ ନିମନ୍ତେ ଯେଉଁ ବୃହଦାକାର ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ, ତାହା ଦ୍ୱାଦଶ ଶତାବ୍ଦୀରେ ପୁନର୍ନିର୍ମିତ ହୋଇଥିଲା । ରାଜାମାନଙ୍କର ପୃଷ୍ଠପୋଷକତା ଓ କୌଣସି ଧର୍ମକୁ ନ ଛାଡ଼ି ସବୁ ଧର୍ମରୁ ସାର ସଂଗ୍ରହ କରିବାକୁ ଲାଳାୟିତ ଥିବା ଓଡ଼ିଶାର ଜନସାଧାରଣଙ୍କର ସକ୍ରିୟ ସହଯୋଗିତା ଫଳରେ ଓଡ଼ିଶାର ଲୋକଙ୍କ ଧର୍ମ ଏକ ସମନ୍ୱିତ ରୂପ ଧାରଣ କରିଥିଲା ଓ ପରିଶେଷରେ ତାହା ଜଗନ୍ନାଥ ପୀଠରେ ପରିସ୍ଫୁଟ ହୋଇଥିଲା । ଏହି କାରଣରୁ ଜଗନ୍ନାଥଙ୍କ ଉତ୍ପତ୍ତି ସମ୍ବନ୍ଧରେ ଗୁଡ଼ିଏ ବିଭିନ୍ନ ମତ ରହିଥିବା ଦେଖାଯାଏ । ବ୍ରାହ୍ମଣ୍ୟଧର୍ମ, ବୌଦ୍ଧଧର୍ମ, ଜୈନଧର୍ମ ଓ ଶବର ସଂସ୍କୃତି, ଏହି ଚାରୋଟି ମଧ୍ୟରୁ ଏକ ବା ଏକାଧିକ ଧର୍ମ ଉପରେ ପ୍ରତିଷ୍ଠିତ ପୂଜାପଦ୍ଧତି, ବିଗ୍ରହର ନାମକରଣ ଓ ବିଗ୍ରହର ଆକାର ଇତ୍ୟାଦିକୁ ଭିତ୍ତିକରି ଏହି ମତବାଦଗୁଡ଼ିକର ସୃଷ୍ଟି ହୋଇଛି । ପ୍ରକୃତ କଥା ଏହି ଯେ, ଓଡ଼ିଶା ଓ ଓଡ଼ିଶାର ଅଧିବାସୀମାନଙ୍କର ଜାତୀୟ ଦେବତା ଜଗନ୍ନାଥଙ୍କଠାରେ ଉପରୋକ୍ତ ଚାରି ପ୍ରକାର ଭାରତୀୟ ଧାର୍ମିକ ସଂସ୍କୃତିର ମୁଖ୍ୟ ବିଭାଗଗୁଡ଼ିକ ସମନ୍ୱିତ ରୂପେ ପ୍ରକଟିତ ହୋଇଅଛି । ଏହି 'ସାର୍ବଜନୀନ ପୂଜା ପୀଠ'ରେ ଉପରୋକ୍ତ ଚାରୋଟି ଧର୍ମ ମଧ୍ୟରୁ ପ୍ରଥମେ ଯେଉଁ ଧର୍ମର ପ୍ରବର୍ତ୍ତନ ଫଳରେ ଜଗନ୍ନାଥଙ୍କର ଆବିର୍ଭାବ ବା ଅଭ୍ୟୁଦୟ ଘଟିଥାଉ ପଛକେ, ଏହି ଉଦାର ଦୃଷ୍ଟିଭଙ୍ଗୀ ଅଦ୍ୟାବଧି ଅନୁସୃତ ହେଉଥିବା ହେତୁ ଜଗନ୍ନାଥ ସମଗ୍ର ହିନ୍ଦୁ ଜଗତରୁ ଦର୍ଶକ ତଥା ତୀର୍ଥଯାତ୍ରୀମାନଙ୍କ ଆକୃଷ୍ଟ କରି ଆଣିଥାଆନ୍ତି ।

ଶଙ୍କରାଚାର୍ଯ୍ୟଙ୍କ ସମୟରୁ ଭାରତର ପ୍ରାୟ ସବୁ ବଡ଼ ବଡ଼ ଧର୍ମ ପ୍ରଚାରକ ନିଜର ମତବାଦ ଓ ଧର୍ମ ପ୍ରଚାର କରିବା ନିମନ୍ତେ ପୁରୀକୁ ଅସାଧାରଣ ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ର ରୂପେ ବିବେଚନା କରି ଆସିଛନ୍ତି । ରାମାନୁଜ, ମାଧ୍ୱ, ବଲ୍ଲଭ, ନିମ୍ବାର୍କ ଓ ଶ୍ରୀ ଚୈତନ୍ୟ ଆଦି ପ୍ରସିଦ୍ଧ ଧର୍ମ ପ୍ରଚାରକମାନେ ଜଗନ୍ନାଥଙ୍କୁ ନିଜ ଧର୍ମ ମତ ସହିତ ସଂଯୁକ୍ତ କରି ରଖିବାକୁ ଉଦ୍ୟମ କରିଛନ୍ତି । କିନ୍ତୁ ଜଗନ୍ନାଥ କୌଣସି ନିର୍ଦ୍ଦିଷ୍ଟ ଧର୍ମମତ ବା ନିର୍ଦ୍ଦିଷ୍ଟ ଉପାସକ ଗୋଷ୍ଠୀର ଦେବତା ନ ହୋଇ ସେହି ଜଗନ୍ନାଥ ଭାବରେ ହିଁ ରହିଛନ୍ତି । ଜଗନ୍ନାଥ ମହତ୍ତ୍ୱର ଗୁପ୍ତକଥା ଏହି ଯେ, ସେ ହେଉଛନ୍ତି 'ଜଗତର ନାଥ'; କୌଣସି ଧର୍ମ ପ୍ରଚାରକ ବା ଧର୍ମ ସଂପ୍ରଦାୟ ଯେତେ ଲୋକପ୍ରିୟ ବା ପ୍ରଭାବଶାଳୀ ହୋଇଥିଲେ ସୁଦ୍ଧା ଜଗନ୍ନାଥ ତାଙ୍କର ହୋଇଯାଇ ନାହାନ୍ତି—ନିଜତ୍ୱ ରକ୍ଷା କରି 'ଜଗନ୍ନାଥ' ହିଁ ରହିଛନ୍ତି ।

ଏହା ପ୍ରକୃତରେ କୌତୂହଳର ବିଷୟ ଯେ ଜଗନ୍ନାଥ 'ବିଷ୍ଣୁଙ୍କର ଅବତାର' ହେଲେ ମଧ୍ୟ ସେ ପୂର୍ବାପୂର୍ବ ଭାବରେ କେବଳ ବୈଷ୍ଣବ ସମ୍ପ୍ରଦାୟର ଦେବତା ନୁହନ୍ତି । ନିମ୍ନୋକ୍ତ ଶ୍ଳୋକ ଭିତରେ ପଣ୍ଡିତମାନେ ତାଙ୍କୁ ଭଗବଦ୍ ଗୀତାର ପୁରୁଷୋତ୍ତମ ରୂପେ ବର୍ଣ୍ଣନା କରିବାକୁ ଚେଷ୍ଟା କରିଛନ୍ତି—

ଅତୋଽସ୍ମି ଲୋକେ ବେଦେ ଚ
ପ୍ରଥିତଃ ପୁରୁଷୋତ୍ତମଃ (୧୫.୧୮)

କିନ୍ତୁ କାଳକ୍ରମେ 'ବିଷ୍ଣୁ ପୁରୁଷୋତ୍ତମ' ସୂକ୍ଷ୍ମ ଭାବରେ ରୂପାନ୍ତରିତ ହୋଇ କେବଳ 'ଜଗନ୍ନାଥ' ରୂପେ ପରିଣତ ହେଲେ ।

ଭାରତରେ ପ୍ରଚଳିତଥିବା ବହୁ ଧର୍ମ, ସମ୍ପ୍ରଦାୟ ଓ ମତବାଦ ସାର ବସ୍ତୁ, ସାଂସ୍କୃତିକ ଆଲାପ-ଆଲୋଚନା ଜରିଆରେ ଓଡ଼ିଶାର ଜନସାଧାରଣଙ୍କ ମନକୁ ପ୍ରଭାବିତକରି ତାଙ୍କଠାରେ ମୂର୍ତ୍ତି ରୂପ ଗ୍ରହଣକଲା । ସାଧାରଣ ଲୋକଙ୍କ ମନରେ ଏହି ପ୍ରଶ୍ନ ଉଦିତ ହୁଏ—"ଜଗନ୍ନାଥ ଯଦି କେବଳ ବିଷ୍ଣୁ ରୂପେ ଆତ୍ମପ୍ରକାଶ କରି-ଥାନ୍ତେ, ତେବେ ତାଙ୍କର ଅର୍ଦ୍ଧାଙ୍ଗିନୀ ଲକ୍ଷ୍ମୀ ଜଗନ୍ନାଥ ମନ୍ଦିର ମଧ୍ୟରେ ସବୁଠାରୁ ଅଧିକ ପୂଜା ପାଉଥାଆନ୍ତେ; କିନ୍ତୁ ତାହା ହୋଇନାହିଁ । ପ୍ରକୃତରେ ଶିବଙ୍କର ତାନ୍ତ୍ରିକ ଅର୍ଦ୍ଧାଙ୍ଗିନୀ 'ବିମଳାଙ୍କ' ପୁରୀ ମନ୍ଦିର ମଧ୍ୟରେ ଥିବା ଅନ୍ୟାନ୍ୟ ଦେବଦେବୀଙ୍କଠାରୁ ସମଧିକ ଗୌରବଶାଳିନୀ । ପୁରୀ ମନ୍ଦିର ମଧ୍ୟରେ ବିମଳାଙ୍କର ପ୍ରତିପତ୍ତି ଏତେ ବେଶି ଯେ ଜଗନ୍ନାଥଙ୍କୁ ଅର୍ପଣ କରାଯାଉଥିବା ଭୋଗ ବା ପ୍ରସାଦ 'ମହାପ୍ରସାଦ' ହୋଇପାରେ ନାହିଁ, ଯେତେବେଳ ଯାଏ ବିମଳା ମନ୍ଦିରରେ ପାରମ୍ପରିକ ବିଧିରେ ପୂଜା ଶେଷ ହୋଇ ନଥାଏ ସେହିଭଳି ମଧ୍ୟ ମନ୍ଦିରର ରତ୍ନସିଂହାସନରେ ଅଧିଷ୍ଠିତା ସୁଭଦ୍ରାଙ୍କୁ 'ଭୁବନେଶ୍ୱରୀ ମନ୍ତ୍ର' ଦ୍ୱାରା ପୂଜା କରାଯାଏ (ତାଙ୍କୁ କୃଷ୍ଣ ଅବତାର ରୂପୀ ଜଗନ୍ନାଥଙ୍କର ଭଗିନୀ ବା ପତ୍ନୀ ଲକ୍ଷ୍ମୀରୂପେ ଗ୍ରହଣ କରାଯାଉ ପଛକେ ।) ଏହି କାରଣରୁ ଅନେକ ଲୋକ ମନେକରନ୍ତି ଯେ ଭାରତର ତିନୋଟି ଗୁରୁତ୍ୱପୂର୍ଣ୍ଣ ଧର୍ମ-ଧାରା ଜଗନ୍ନାଥଙ୍କଠାରେ ଏକତ୍ର ଆତ୍ମପ୍ରକାଶ କରିଛି ବା ଜଗନ୍ନାଥଙ୍କଠାରେ ସମନ୍ୱିତ ହୋଇ ଉଠିଛି । ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର ଯଥାକ୍ରମେ ବୈଷ୍ଣବ ଧର୍ମ, ଶାକ୍ତ-ଧର୍ମ ଓ ଶୈବଧର୍ମର ପ୍ରତୀକ ହୋଇ ରହିଛନ୍ତି । ତେଣୁ ଜଗନ୍ନାଥପୀଠରେ କେବଳ ଓଡ଼ିଶା ନୁହେ, ସମଗ୍ର ହିନ୍ଦୁ ଜଗତର ବିଭିନ୍ନ ଧର୍ମ ତଥା ଧର୍ମ ବିଶ୍ୱାସ ଏହିପରି ସମନ୍ୱିତ ଭାବରେ ପ୍ରକାଶ ଲାଭ କରିଛି ଯେ ତହିଁରେ ପ୍ରତ୍ୟେକ

ଧର୍ମ ନିଜର ବ୍ୟକ୍ତିଗତ ସତ୍ତା ହରାଇଦେଇଛି; କିନ୍ତୁ ସେହି ସମନ୍ୱୟ ମଧ୍ୟରେ ବି ଚିନ୍ତାବିଦ୍‌ମାନେ ପ୍ରତ୍ୟେକ ଧର୍ମର ବ୍ୟକ୍ତିଗତ ସତ୍ତା ସ୍ପଷ୍ଟରୂପେ ଦେଖିପାରୁଛନ୍ତି ।

ଭାରତୀୟ ଧର୍ମଧାରାମାନଙ୍କର ତୁଳନାତ୍ମକ ଅଧ୍ୟୟନ କରୁଥିବା ବ୍ୟକ୍ତିମାନେ ଏ କଥା ଜାଣି ଆନନ୍ଦିତ ହେବେ ଯେ ଓଡ଼ିଶାର କଟକ ଜିଲ୍ଲାରେ ଗୋଟିଏ ମନ୍ଦିରରେ ଗୋଟିଏ ପ୍ରକାଣ୍ଡ ଶିଳାଖଣ୍ଡକୁ ପଞ୍ଚଦେବତାରୂପେ ପୂଜା କରାଯାଏ । ଏହି ମନ୍ଦିରଟି "ମହାବିନାୟକ' ନାମରେ ପରିଚିତ । ଏହି ମନ୍ଦିରଟି ଏକ ପାହାଡ଼ର ପାଦଦେଶରେ, କଲିକତା ମାନ୍ଦ୍ରାଜ ରେଲପଥର ଧାନମଣ୍ଡଳ ଷ୍ଟେସନ ନିକଟରେ ଅବସ୍ଥିତ ଏହି ମନ୍ଦିରରେ ସ୍ଥାପିତ ବା ସ୍ଥିତ ଏକ ପ୍ରକାଣ୍ଡ ପ୍ରସ୍ତର ଖଣ୍ଡର ବିଭିନ୍ନ ଅଂଶକୁ ଶିବ, ଦୁର୍ଗା, ବିଷ୍ଣୁ, ଗଣେଶ ଓ ସୂର୍ଯ୍ୟରୂପେ ଚିହ୍ନିତ କରାଯାଇ ପ୍ରାୟ ଏକ ହଜାର ବର୍ଷ ତଳୁ ପୂଜା କରାଯାଉଛି । ଫୁଲବାଣୀ ଜିଲ୍ଲା ଗନ୍ଧରାଡ଼ିଠାରେ ବିଷ୍ଣୁ ଓ ଶିବଙ୍କର ଯେଉଁ ଯମଜ ମନ୍ଦିର ରହିଛି, ସେଥିରେ ଭାରତୀୟ ଧର୍ମ ଜୀବନରେ ବହୁ ଶତାବ୍ଦୀ ଧରି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଆସିଥିବା ଦୁଇଟି ଦେବତା ଶିବ ଓ ବିଷ୍ଣୁଙ୍କୁ ସମାନ ଆସନ ପ୍ରଦାନ କରାଯାଇଥିବା ପ୍ରମାଣିତ ହେଉଛି । ତହିଁରୁ ଉତ୍କଳର ପ୍ରଶଂସନୀୟ ଧାର୍ମିକ ଔଦାର୍ଯ୍ୟ ମଧ୍ୟ ପ୍ରତିପାଦିତ ହେଉ-ଅଛି । ମୂର୍ତ୍ତି ଉପାସନା ମାଧ୍ୟମରେ ବିଭିନ୍ନ ଆଦର୍ଶବାଦର ଯେପରି ମଧୁର ମିଳନ ଘଟିଛି, ଓ ସେମାନେ ଯେପରି ଭାବେ ନିଜର ବ୍ୟକ୍ତି-ଗତ ସତ୍ତା ଓ ପାର୍ଥକ୍ୟ ହରାଇ ଏକ ସମନ୍ୱିତ ସୁଷମ ରୂପେ ପ୍ରତିଷ୍ଠାରେ ଉଦ୍ୟତ ହୋଇଛନ୍ତି ସେଥିରୁ ଜଗନ୍ନାଥଙ୍କ ପବିତ୍ର ଓଡ଼ିଶା ଭୂମିର ଅଧିବାସୀମାନଙ୍କର ମାନସିକ ବୈଶିଷ୍ଟ୍ୟର ସୂଚନା ମିଳେ ।

ଆଧୁନିକ ଦୁନିଆର ବିଭିନ୍ନ ଦେଶ ଓ ସମାଜ ରାଜନୈତିକ ଘାତପ୍ରତିଘାତ, ସାମାଜିକ ବିଚନୈତିକତା ଓ ଏକଛତ୍ର ମନୋବୃତ୍ତି ଦ୍ୱାରା ଖଣ୍ଡବିଖଣ୍ଡିତ ହୋଇ ପଡ଼ୁଥିବା ବେଳେ ବିଶ୍ୱରେ ଶାନ୍ତି, ମୈତ୍ରୀ ଓ ସଦ୍ଭାବ ପ୍ରତିଷ୍ଠା ନିମନ୍ତେ 'ଶାନ୍ତିପୂର୍ଣ୍ଣ ସହାବସ୍ଥାନ' ରୂପକ ଉଚ୍ଚ ଆଦର୍ଶବାଦ ଅପରିହାର୍ଯ୍ୟ ବିବେଚିତ ହେଉଅଛି । ଇତିହାସର ପ୍ରାକ୍ କାଳରୁ ଭାରତୀୟ ଜୀବନ, ଭାରତୀୟ ଦର୍ଶନ, ଭାରତୀୟ ନୀତିଶାସ୍ତ୍ର ଓ ଭାରତୀୟ ରାଷ୍ଟ୍ରପରିଚାଳନାରେ ଧର୍ମହିଁ ମୁଖ୍ୟ ସ୍ଥାନ ଅଧିକାର କରିଆସିଛି । ଭଗବତ୍ ସତ୍ତ୍ୱକୁ ଭିତ୍ତିକରି କବି, ଦାର୍ଶନିକ, ଧର୍ମ ପ୍ରଚାରକ ଓ ଯୋଗୀଶକ୍ତି ସମ୍ପନ୍ନ ବ୍ୟକ୍ତିମାନେ ନିଜର ଆଦର୍ଶ, ମତବାଦ ଓ ଜୀବନ ଦର୍ଶନରୁପୀ ମନୋଜ୍ଞ ସୌଧମାନ ନିର୍ମାଣ କରିଯାଇଛନ୍ତି ।

ଏହିଭଳି ଭାବରେ ଭଗବତ୍ ଉପାସନା ତଥା ମନ୍ଦିର ଜରିଆରେ ଦେଶବାସୀଙ୍କ ମନରେ ଭକ୍ତିଭାବ ଉଦ୍ରେକକରି ସେମାନଙ୍କ ମଧ୍ୟରେ ପରସ୍ପର ପ୍ରତି ସ୍ନେହଶ୍ରଦ୍ଧା ଓ ଉତ୍ତମ ସଦଭାବ ବଢ଼ାଇବା ଉଦ୍ଦେଶ୍ୟରେ ଉଦ୍ୟମ କରାଯାଇଥିଲା । ଓଡ଼ିଶାରେ ଥିବା ଜଗନ୍ନାଥପୀଠ ଅନ୍ତତଃ ଦୁଇ ସହସ୍ର ବର୍ଷ ଧରି ଧର୍ମ ରାଜ୍ୟରେ ଶାନ୍ତି-ପୂର୍ଣ୍ଣ ସହାବସ୍ଥାନର ଆଲୋକସ୍ତମ୍ଭ ରୁପେ ଠିଆହୋଇଛି । ଏକ ଦିଗରେ ଏହା ଭକ୍ତି, ଉପାସନା, ଭଗବତ୍ ଆଶୀର୍ବାଦ ଓ ମାନବ ସମାଜର ଆଧ୍ୟାତ୍ମିକ ଉନ୍ନତି ତଥା ଅନ୍ୟ ଦିଗରେ ସଦ୍ଭାବ, ସମତା ଓ ପରସ୍ପର ପ୍ରତି ସହନଶୀଳତାର ଏକ ଅକ୍ଷୟ କୀର୍ତ୍ତିସ୍ତମ୍ଭ ରୁପେ ପରିକଳ୍ପିତ ।

ଗଭୀର ତାତ୍ତ୍ୱିକ ବିଶ୍ଳେଷଣ କଲେ ଦେଖାଯିବ ଯେ, ଜଗନ୍ନାଥ କେବଳ ଏକ ଆଧ୍ୟାତ୍ମିକ ଉପଲବ୍ଧିର ପୀଠ ନୁହନ୍ତି;

ବରଂ, ସେ ହେଉଛନ୍ତି ଏକ ସାମାଜିକ ସାଂସ୍କୃତିକ ଅନୁଷ୍ଠାନ, ଯାହାର ବ୍ୟାପକତା କଳ୍ପନା କରି ହେବ ନାହିଁ । ବିଶ୍ୱରେ ଚିର ଶାନ୍ତି ପ୍ରତିଷ୍ଠା ଉଦ୍ଦେଶ୍ୟରେ ସେ ମାନବସମାଜକୁ ଏହି ଆତ୍ମୋତ୍କର୍ଷ-ପୂରିତ ବାଣୀ ଅହରହ ଶୁଣାଉଛନ୍ତି "ନିଜର ଯାହା ଶ୍ରେଷ୍ଠ; ତାହା ଅନ୍ୟକୁ ବିତରଣ କର, ଅନ୍ୟର ଯାହା ବଞ୍ଚି ରହିବ ଅନ୍ୟକୁ ଭଲ ଭାବରେ ବଞ୍ଚି ରହିବାର ସୁବିଧା ସୁଯୋଗ ଦିଅ ।"

—*—

# ଜଗନ୍ନାଥ ଓ ରଥଯାତ୍ରା

## ଆମ ରଥଯାତ୍ରା

ରଥଯାତ୍ରା କଥା କିଏ ନଜାଣେ ? ଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ଏକ ଜନମହୋତ୍ସବ । ଖାଲି ଭାରତରେ ନୁହେଁ, ଭାରତ ବାହାରେ ମଧ୍ୟ ଲୋକେ ଏକଥା ଜାଣନ୍ତି । ତେବେ, ରଥଯାତ୍ରା ଓଡ଼ିଶାର ନିଜସ୍ୱ ନୁହେଁ । କେବେ ଓ କେଉଁଠାରେ ଏ ଯାତ୍ରା ପ୍ରଥମେ ଅନୁଷ୍ଠିତ ହୋଇଥିଲା, କହି ହେବ ନାହିଁ । ଏବେ ମଧ୍ୟ ଭାରତର କେତେକ ପ୍ରଦେଶରେ ବଡ଼ ଧରଣର ରଥଯାତ୍ରା ହୁଏ । ତେବେ, ଆମ ରଥଯାତ୍ରା ସବୁଠାରୁ ବଡ଼ । ଆକାର ପ୍ରକାର, ଆୟୋଜନ ଆଡ଼ମ୍ବର, ବିଧି-ବିଧାନ, ଏସବୁ ଦୃଷ୍ଟିରୁ ଆମର ରଥଯାତ୍ରା ବୃହତ୍ତମ । 'କୋଣାର୍କ'ଠାରେ ରଥଯାତ୍ରା ହେଉଥିଲା, ଏବେ ମଧ୍ୟ ଅଶୋକାଷ୍ଟମୀ ଦିନ ଲିଙ୍ଗରାଜ ମହାପ୍ରଭୁଙ୍କ ରଥଯାତ୍ରା ହୁଏ । ତଥାପି 'ରଥଯାତ୍ରା' କହିଲେ ସାଧାରଣତଃ ପୁରୀର ବିଖ୍ୟାତ ରଥଯାତ୍ରାହିଁ ବୁଝାଯାଇଥାଏ ।

## ଜଗନ୍ନାଥ କିଏ ?

"ଜଗନ୍ନାଥ କିଏ ?" ଏଭଳି ଗୋଟାଏ ପ୍ରଶ୍ନ ବଡ଼ ହାସ୍ୟାସ୍ପଦ ମନେ ହୁଏ । ଅଥଚ, ଏହାର ଉତ୍ତର ଦେବା ଭାରି କଷ୍ଟ ।.ତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହି ପ୍ରଶ୍ନର ଉତ୍ତର ଗଭୀର ଚିନ୍ତା-ସାପେକ୍ଷ । ଶିଶୁଜନୋଚିତ ଭାବରେ ବଡ଼ ଦେଉଳ ଭିତରର ସେହି 'ଚକାଡୋଳା' – ଜଗନ୍ନାଥ ବୋଲି ଦେଖାଇ ଦିଆଯିବା

ଅପାଙ୍କ୍ତେୟ ନୁହଁନ୍ତି । କିନ୍ତୁ, ଭାବୁକ ଏତିକରେ ସନ୍ତୁଷ୍ଟ ହୁଏ ନାହିଁ । ସେ ପୂର୍ବ ପର୍ଯ୍ୟନ୍ତରେ, ଏ ଥିଲେ କେଉଁଠି ? ୟାଙ୍କର ଏଭଳି ରୂପ କାହିଁକି ? ୟାଙ୍କୁ କିଏ ପ୍ରତିଷ୍ଠା କରିଥିଲା ? ତାହା ପୁଣି କେତେ ବର୍ଷ ତଳର କଥା ? ଏତେ ବଡ଼ ଦେଉଳ ତୋଳିଲା କିଏ ? ଜଗନ୍ନାଥ ତ ସାନଭାଇ, ବଡ଼ଭାଇଙ୍କ ନାମରେ ରଥଯାତ୍ରାର ନାମ କରଣ ହେଉନାହିଁ କାହିଁକି ? ସମସ୍ତେ କହୁଛନ୍ତି, "ଜଗନ୍ନାଥଙ୍କ ରଥଯାତ୍ରା"; ଅଥଚ, ବଳଭଦ୍ର ଓ ସୁଭଦ୍ରା ମଧ୍ୟ ରଥଯାତ୍ରାରେ ବାହାରନ୍ତି । ଏଭଳି ନାନା ପ୍ରଶ୍ନ ଭାବୁକର ମନରେ ଉଦିତ ହୋଇଥାଏ । ଅନନ୍ତକାଳ ଧରି ବୋଧହୁଏ ଏଭଳି ନାନା ପ୍ରଶ୍ନ ମନରେ ଉଙ୍କି ମାରୁଥିବ ।

## ଆଜି ମଧ୍ୟ ଜଗନ୍ନାଥ ରହସ୍ୟାବୃତ

ପ୍ରକୃତ କଥା ହେଉଛି, ଆଜ ସୁଦ୍ଧା ଜଗନ୍ନାଥେ ଆମର ସୁବିଦିତ ହୋଇ ନାହାନ୍ତି । ବହୁ ଗବେଷଣା କରି ଆମେ ତାଙ୍କ ସମ୍ପର୍କରେ ଯେତେ ଯେତେ କଥା ଜାଣିପାରୁଛୁ, ତାହା ସମୁଦ୍ରକୁ ଶଙ୍ଖେ ପାଣିପରି । ସଂସ୍କୃତ ପୁରାଣମାନଙ୍କରେ ଜଗନ୍ନାଥଙ୍କ କଥା ଅନେକ ଜାଗାରେ ଅଛି । କିନ୍ତୁ ଦେଖାଯାଏ, ନାନା ମୁନିଙ୍କ ନାନା ମତ । ତେଣୁ ଠିକ୍ କିଏ, ଅଠିକ୍ କିଏ—କହିବା ସହଜ ନୁହେ । ଶହ ଶହ ବର୍ଷ ତଳେ ପୁରାଣମାନ ରଚିତ ହୋଇଥିଲା । ଅଥଚ, ସେତେବେଳକୁ ସୁଦ୍ଧା ଜଗନ୍ନାଥଙ୍କ ଇତିହାସ ଲୋକେ ଠିକ୍ ଭାବରେ ଜାଣି ନଥିଲେ । ଯଦି ଜାଣି ଥାଆନ୍ତେ, ସବୁ ପୁରାଣରେ ଏକ ପ୍ରକାର କଥା ଲେଖାଯାଇଥାଆନ୍ତା । ପୁଣି ବିଭିନ୍ନ ପୁରାଣର ରଚନା ସମୟକୁ ଭିନ୍ନ ଭିନ୍ନ ଭାବରେ ଜଗନ୍ନାଥଙ୍କ କଥା ଲୋକଙ୍କୁ ଜଣାଥିବାର ମଧ୍ୟ ଅନୁମିତ ହୁଏ । ତେଣୁ ଆଜ ଏତେ ବର୍ଷ ପରେ

ଆମେ ଯଦି ଜଗନ୍ନାଥଙ୍କୁ ଭଲକରି ଚିହ୍ନି ପାରିନାହୁଁ, ଏଥିରେ କିଛି ଦୋଷ ନାହିଁ ।

## ଗୋଟିଏ କୌତୁକିଆ ଯୁକ୍ତି

ଜଗନ୍ନାଥଙ୍କୁ ଯଦି ଆମେ ଠିକ୍ ଭାବରେ ଚିହ୍ନି ପାରୁନାହୁଁ, ତାହା ହେଲେ ଦୋଷଟା ଖାଲି ଆମର ନୁହେଁ । ଭକ୍ତର ଭାଷାରେ କୁହାଯାଇପାରିବ, ସେ ଦୋଷଟା ଜଗନ୍ନାଥଙ୍କର ମଧ୍ୟ । ଭକ୍ତ କବି ଅଭିମନ୍ୟୁ ସାମନ୍ତସିଂହାର ଶ୍ରୀରାଧାଙ୍କର ରୂପସଜ୍ଜର ବର୍ଣ୍ଣନା କରିବା ଆଗରୁ ପାଠକମାନଙ୍କୁ ବଡ଼ ମଉଜିଆ ଭାବରେ କହିଛନ୍ତି—

"ପାଠକେ ! ମୁଁ ଏବେ ଶ୍ରୀମତୀ ରାଧାଙ୍କର ରୂପ ବର୍ଣ୍ଣନା କରିବାକୁ ଯାଉଛି । ତେଣେ ମୋର ପରମ ଆରାଧ୍ୟ ଶ୍ରୀକୃଷ୍ଣଙ୍କୁ ନେଇ ରାଧାଙ୍କର ଶୟନକକ୍ଷରେ ମୁଁ ଠିଆକରାଇଦେଲିଣି । ରାଧା ଶୋଇଛନ୍ତି । ଆଉ, ଶ୍ରୀକୃଷ୍ଣ ଟିକିଏ ଦୂରରେ ଠିଆହୋଇ ତାଙ୍କର ସୌନ୍ଦର୍ଯ୍ୟ ଦେଖୁଛନ୍ତି । ଶ୍ରୀକୃଷ୍ଣ ଯେଉଁ କ୍ରମରେ ଶ୍ରୀରାଧାଙ୍କୁ ଦେଖୁଛନ୍ତି; ମୁଁ ସେହି କ୍ରମରେ ଶ୍ରୀରାଧାଙ୍କର ବିଭିନ୍ନ ଅଙ୍ଗ-ପ୍ରତ୍ୟଙ୍ଗର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବି । କିନ୍ତୁ; ହେ ପାଠକେ ! ମତେ। ଲାଗୁଛି ରାଧାଙ୍କର ରୂପ ବର୍ଣ୍ଣନା ପ୍ରସଙ୍ଗରେ ମୋ ବର୍ଣ୍ଣନାର କୌଣସି କ୍ରମ ରହିବ ନାହିଁ । ମନେ ରଖନ୍ତୁ, ଶ୍ରୀମତୀଙ୍କର ଅଙ୍ଗ ପ୍ରତ୍ୟଙ୍ଗର ବର୍ଣ୍ଣନା ପଢିଲାବେଳେ ଆପଣମାନେ ଯଦି ଗୋଟାଏ ବାନ୍ଧିବନ୍ଧା କ୍ରମ ଦେଖିବେ ନାହିଁ, ତେବେ ନିଶ୍ଚୟ ଭାବିବେ—'ଏ ଅଭିମନ୍ୟୁଟା ଗୋଟାଏ ପାଗଳ ଥିଲା, ଯାହା ଫଳରେ ରାଧାଙ୍କ ରୂପ ବର୍ଣ୍ଣନାରେ ତା'ର କୌଣସି ବାଗବର୍ଗ ନାହିଁ । କିନ୍ତୁ ମତେ ପଚାରିଲେ ମୁଁ

କହିବ—"ମୋ ବର୍ଣ୍ଣନାରେ ଯଦି ଅସମତା ଦୋଷ ରହିଗଲା, ତାହା ହେଲେ ସେ ଦୋଷର କାରଣ କେବଳ ମୁଁ ନୁହେଁ,—ସେ ଦୋଷର କାରଣ ହେଉଛନ୍ତି ଶ୍ରୀମତୀ ରାଧାଙ୍କର ଅଲୌକିକ, ଅନବଦ୍ୟ-ଚମତ୍କୃତ ରୂପ ସମ୍ପଦ । ଶ୍ରୀରାଧା ଏଭଳି ସୁନ୍ଦରୀ ଯେ, ଶ୍ରୀକୃଷ୍ଣ ଯେତେବେଳେ ତାଙ୍କ ପାଖେ ଠିଆହୋଇ ତାଙ୍କୁ ଦେଖିବାକୁ ଲାଗିଲେ, ସେତେବେଳେ ତାଙ୍କର ଦୃଷ୍ଟି ଶ୍ରୀମତୀଙ୍କ ଉପରେ ଗୃହୀତ ହେଲାବେଳେ କୌଣସି କ୍ରମିକତା ରକ୍ଷା କରିପାରିଲା ନାହିଁ । ପ୍ରତ୍ୟେକ ଅଙ୍ଗର ସୌନ୍ଦର୍ଯ୍ୟ ଶ୍ରୀକୃଷ୍ଣଙ୍କୁ ଏଭଳି ଭାବରେ ଆକୃଷ୍ଟ କଲା ଯେ, ରାଧାଙ୍କ ମୁଖ, ହସ୍ତ, ପାଦ ପ୍ରଭୃତିକୁ ଲକ୍ଷ୍ୟ କରିବାରେ କୌଣସି ବାଗବର୍ଗ ରହିଲା ନାହିଁ । ମୁଁ ତ ଆଗରୁ କହିଛି, ମୋର ଆରାଧ୍ୟ ଦେବତା ଶ୍ରୀକୃଷ୍ଣ ଯେଉଁ କ୍ରମରେ ରାଧାଙ୍କର ଅଙ୍ଗ-ପ୍ରତ୍ୟଙ୍ଗ ଦେଖିଥିଲେ, ମୁଁ ମଧ୍ୟ ସେହି କ୍ରମରେ ବର୍ଣ୍ଣନା କରିବି । ଆଉ ଯଦି ତାଙ୍କ ଦେଖାରେ ବାଗବର୍ଗ ରହିଲା ନାହିଁ, ମୋର ଏହି କବିତା ଭିତରେ ଗୋଟିଏ କ୍ରମ ଖୋଜିବସିଲେ ମିଳିବ କାହୁଁ ? ତେଣୁ ମୋର ଇଷ୍ଟଦେବ, ଶ୍ରୀମତୀଙ୍କର ରୂପ ଦେଖିବାରେ କ୍ରମହୀନତା ଦୋଷରେ ଯଦି ଦୋଷୀ ହେଲେ, ତେବେ ମୁଁ କହିବି, ଶ୍ରୀମତୀ ରାଧାଙ୍କର ଅଲୌକିକ ସୌନ୍ଦର୍ଯ୍ୟହିଁ ଏ ସମସ୍ତ ଦୋଷର ମୂଳ କାରଣ।"

ଓଡ଼ିଆ ସାହିତ୍ୟର ସ୍ୱନାମଧନ୍ୟ ମହାକବି ତଥା ଭାରତୀୟ ଭକ୍ତ କବି-ଗଗନର ମନୋଜ୍ଜ୍ୱଳ ନକ୍ଷତ୍ର ଅଭିମନ୍ୟୁ ସାମନ୍ତସିଂହାର-ଙ୍କର ଏହି ଅସାଧାରଣ ଯୁକ୍ତି ଏ ପ୍ରସଙ୍ଗରେ ମନେପଡ଼ିଯାଏ । ଅଭିମନ୍ୟୁଙ୍କର ପଦାଙ୍କ ଅନୁସରଣକରି ସହୃଦୟ ଶ୍ରୋତାମାନଙ୍କୁ ସରସତାର ବାତାବରଣ ଭିତରେ କୁହାଯାଇପାରେ—

"ଜଗନ୍ନାଥଙ୍କୁ ଯଦି ଆମେ ଠିକ୍ ଭାବରେ ଚିହ୍ନିପାରିଲୁ ନାହିଁ, ତେବେ ଆମର ଅଜ୍ଞତା ତହିଁର ଏକମାତ୍ର କାରଣ ନୁହେଁ । ଜଗନ୍ନାଥଙ୍କର ମହାମାୟିତା ମଧ୍ୟ ଏଥିର ଅଳ୍ପ କାରଣ ନୁହେଁ ।"

## ଗବେଷଣା ଚାଲିଛି

ଜଣେ କହୁଥିଲେ—ଗୋ + ଏଷଣା = ଗବେଷଣା; ଅର୍ଥାତ୍ ହଜିବା ଗାଈକୁ ଖୋଜି ବୁଲିବା । ଋଷି ଆଶ୍ରମର ଗାଈଟିଏ କୁଆଡ଼େ ହଜିଗଲେ ଶିଷ୍ୟମାନେ ଖୋଜି ବୁଲନ୍ତି । କିଏ ପୂର୍ବକୁ ଯାଏ ତ, କିଏ ପଶ୍ଚିମକୁ ଯାଏ । କିଏ ପୋଖରୀପଟକୁ ଯାଏ ତ, କିଏ ଡୋଙ୍ଗାପଟକୁ ଯାଏ । ଏହିପରି ଭାବରେ ଖୋଜାଖୋଜି ଚାଲେ । 'ଗବେଷଣା'ର ଏଭଳି ଅର୍ଥ ଥାଉ ବା ନଥାଉ, ଆଜିକାଲି ଅଜଣା କଥାକୁ ଭଲକରି ଜାଣିବା ଅର୍ଥରେ ତାହା ପ୍ରୟୋଗ କରାଯାଉଛି । କୌଣସି ଅଜ୍ଞାତ କଥାକୁ ଭଲକରି ଜାଣିବାଲାଗି ପଣ୍ଡିତମାନେ ଚେଷ୍ଟା କରନ୍ତି । ସେଥିରେ ବହୁ ଜ୍ଞାନ, ବହୁ ଚର୍ଚ୍ଚା, ବହୁ ଆଲୋଚନା ଦରକାର ହୁଏ । ଯାହାର ଯେଉଁ ଦିଗରେ ଯେତେ ଦୂର ପ୍ରବେଶ, ସେ ସେହି ଦିଗରେ ସେତେ ଦୂର ପ୍ରବୀଣ ଗବେଷକ ବୋଲି ପରିଚିତ ହୁଏ ।

ଏବେ ଅନେକ ବର୍ଷ ଧରି ପଣ୍ଡିତମାନେ ଜଗନ୍ନାଥଙ୍କର ପୂର୍ଣ୍ଣ ପରିଚୟ ପାଇବାକୁ ଚେଷ୍ଟା କରିଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟର କଥା, ଯେତିକି ଯେତିକି ଗବେଷଣା ହେଉଛି, ସେତିକି ସେତିକି ଜଗନ୍ନାଥଙ୍କର ରହସ୍ୟ ଅଧିକରୁ ଅଧିକ ଅଜ୍ଞେୟ ହୋଇ ପଡ଼ି ଲାଗୁଛି । ଗଲା ଶହେ ବର୍ଷ ମଧ୍ୟରେ ଓଡ଼ିଶା ଏବଂ ଓଡ଼ିଶା ବାହାରର ବହୁ ପଣ୍ଡିତ ଏ କ୍ଷେତ୍ରରେ କଠୋର ଶ୍ରମ ସ୍ୱୀକାର

କରିଛନ୍ତି । ସେମାନଙ୍କର ଗବେଷଣା ଜଗନ୍ନାଥଙ୍କର ଉତ୍ପତ୍ତି ସମ୍ପର୍କରେ ମଧ୍ଯ ପ୍ରବର୍ତ୍ତିତ ହୋଇଅଛି । ସଂକ୍ଷେପରେ କହିଲେ, ଗବେଷକମାନଙ୍କର ଏ ସମ୍ପର୍କୀୟ ମତବାଦଗୁଡ଼ିକୁ ଚାରି ଭାଗରେ ବିଭକ୍ତ କରାଯାଇପାରେ । ସେ ଗୁଡ଼ିକ ହେଉଛି—

(୧) ଶାବର—ପ୍ରଥମ ମତରେ, ଜଗନ୍ନାଥ ଶବର ଦେବତା । ଏ ପର୍ଯ୍ୟନ୍ତ ପ୍ରଥମ ଶବର ପୂଜକଙ୍କର ବଂଶଧରମାନେ ଶ୍ରୀମନ୍ଦିର ସଙ୍ଗେ ନିବିଡ଼ ଭାବେ ସଂଶ୍ଳିଷ୍ଟ ଅଛନ୍ତି । ମୂର୍ତ୍ତିତତ୍ତ୍ବ ଦୃଷ୍ଟିରୁ ମଧ୍ଯ ଶବର ସଭ୍ୟତାର ପ୍ରଭାବ ଜଗନ୍ନାଥଙ୍କଠାରେ ସ୍ପଷ୍ଟ ।

(୨) ବ୍ରାହ୍ମଣ୍ୟ—ଦ୍ୱିତୀୟ ମତରେ ଜଗନ୍ନାଥ ହେଉଛନ୍ତି, ବୈଦିକ ଦେବତା । ଉପନିଷଦ୍ ତତ୍ତ୍ବ ଅନୁସାରେ ଦେବତା-ମାନଙ୍କର ମୂର୍ତ୍ତି ପରିକଳ୍ପିତ । ପରବର୍ତ୍ତୀ କାଳରେ ତାନ୍ତ୍ରିକ ପୂଜାପଦ୍ଧତି ଧୀରେ ଧୀରେ ଅନୁପ୍ରବିଷ୍ଟ ହୋଇଅଛି ।

(୩) ବୌଦ୍ଧ—ତୃତୀୟ ମତରେ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରା ବୌଦ୍ଧ ଧର୍ମର ପ୍ରତୀକ । ବୌଦ୍ଧ ଧର୍ମର ବୁଦ୍ଧ, ସଙ୍ଘ ଓ ଧର୍ମହିଁ ଏହି ପ୍ରସିଦ୍ଧ ତ୍ରିମୂର୍ତ୍ତି ଲାଗି ଦାୟୀ । ମୂର୍ତ୍ତିର ଆକାର ପ୍ରକାର ଦୃଷ୍ଟିରୁ ମଧ୍ଯ ବୌଦ୍ଧ ଧର୍ମର ପ୍ରଭାବ ସ୍ୱୀକାର୍ଯ୍ୟ ।

(୪) ଜୈନ – ଚତୁର୍ଥ ମତରେ 'ଜଗନ୍ନାଥ' ନାମର ବିଶ୍ଳେଷଣରୁହିଁ ଜଣାପାଏ ଯେ, ସେ ହେଉଛନ୍ତି ଜୈନ ଧର୍ମର ମୂର୍ତ୍ତି ପ୍ରତୀକ । ଜୈନ ଦର୍ଶନରେ ମଧ୍ଯ ଜଗନ୍ନାଥ ସମ୍ପର୍କରେ ଅନେକ କଥା ବାଙ୍ମୟୀଭୂତ ।

ଏହା ଛଡ଼ା, ଓଡ଼ିଶାର ପ୍ରାଚୀନ ସାହିତ୍ୟରେ ଜଗନ୍ନାଥଙ୍କ ଉତ୍ପତ୍ତି ଯେଉଁ ଅଭିନବ ମତବାଦ ଦେଖାଯାଏ । ପୁରୀର ଗୌରବ-ଗାନ ମଧ୍ୟ ସେ ସବୁର ଉଦ୍ଦେଶ୍ୟ । ଭାରତ ବାହାରର ବିଖ୍ୟାତ ଧର୍ମଗୁରୁମାନେ ଶ୍ରୀକ୍ଷେତ୍ର ପୁରୀକୁ ଆସି ଧର୍ମ ଚର୍ଚ୍ଚା କରିଥିଲେ ବୋଲି ଅନେକ ବିଶ୍ୱାସ କରନ୍ତି, ଯଦିଓ ସେ ସମ୍ପର୍କରେ ଅଧିକ ଅନୁସନ୍ଧାନ ଆବଶ୍ୟକ । ବେଦରେ ଦାରୁ ବିଗ୍ରହ ଜଗନ୍ନାଥଙ୍କର ଉଲ୍ଲେଖଥିବା ପଣ୍ଡିତମାନଙ୍କ ଦ୍ୱାରା ପ୍ରତିପାଦିତ ହୋଇଅଛି । ତେଣୁ ଶ୍ରୀକ୍ଷେତ୍ରର ପ୍ରାଚୀନତା ଓ ପ୍ରସିଦ୍ଧି ସହିତ ଜଗନ୍ନାଥଙ୍କର ପ୍ରକୃତ ପରିଚୟ ପାଇବା ବଡ଼ କଷ୍ଟ ।

ଭାରତର ସ୍ୱନାମଧନ୍ୟ ଧର୍ମପ୍ରଚାରକ ଶଙ୍କରାଚାର୍ଯ୍ୟ ନବମ ଶତାବ୍ଦୀର ପ୍ରାରମ୍ଭରେ ଶ୍ରୀକ୍ଷେତ୍ରକୁ ଆସିଥିଲେ । ଭାରତରେ ସେ ଚାରିଧାମର ପ୍ରତିଷ୍ଠାତା । ସେଥି ଭିତରୁ ଗୋଟିଏ ହେଉଛି ଆମର ଏହି ପୁରୀ । ଶଙ୍କରାଚାର୍ଯ୍ୟଙ୍କର ବହୁ ପୂର୍ବରୁ ଶ୍ରୀକ୍ଷେତ୍ର ଭାରତରେ ପ୍ରସିଦ୍ଧି ଲାଭ କରିଥିବାର ଜଣାଯାଏ । ବୈଦିକ ଯୁଗରୁ ପୁରାଣ ଯୁଗ ବାଟଦେଇ ଶଙ୍କରାଚାର୍ଯ୍ୟଙ୍କ ସମୟ ପର୍ଯ୍ୟନ୍ତ ଆଖି ପକାଇଗଲେ ଦେଖାଯାଏ, ଓଡ଼ିଶାରେ ଧର୍ମଧାରାର ବ୍ୟାପକ ପ୍ରସାର ଘଟିଛି । ଆଦିମ ଶାବର ଧର୍ମ, ବୈଦିକ ଧର୍ମ, ଜୈନ ଧର୍ମ, ବୌଦ୍ଧ ଧର୍ମ ଓ ପରବର୍ତ୍ତୀ କାଳରେ ଶୈବମତ, ବୈଷ୍ଣବମତ, ଶାକ୍ତମତ, ଗାଣପତ୍ୟମତ, ସୌରମତ, ତାନ୍ତ୍ରିକମତ—ଏହି ସବୁ ଧର୍ମ ଓ ମତବାଦ ପ୍ରତି ଓଡ଼ିଶାର ଲୋକେ ପ୍ରବଳ ଆଗ୍ରହ ଦେଖାଇଛନ୍ତି । ଉତ୍କଳ ଭୂଖଣ୍ଡର ଅଧିବାସୀମାନେ ଚିରକାଳ ତତ୍ତ୍ୱଗ୍ରାହକ । କିଏ କିଛି ଗୋଟାଏ ନୂଆ କଥା କହିଲେ, ଓଡ଼ିଶାର ଲୋକେ କାନ-ଡେରି ଶୁଣନ୍ତି । ତାଙ୍କ ଭିତରୁ କେହି କେହି ତୁଏ ତ ତହିଁରେ

ଅନ୍ତର୍ଭୂକ୍ତ ହୋଇ ନିଜର ସତ୍ତା ହରାଇବସନ୍ତି । କିନ୍ତୁ ଓଡ଼ିଶାର ଜନସାଧାରଣ ବା ଓଡ଼ିଆ ଜାତି ଅନ୍ୟର ଯାହା 'ସତ୍' ତାକୁ ଗ୍ରହଣ କରିଛି ସିନା, ନିଜର ସତ୍ତା ହରାଇଦେଇ ନାହିଁ । ଜଗନ୍ନାଥ ପୀଠହିଁ ଏହି ସତ୍ୟର ପ୍ରତୀକ । କେତେ ଧର୍ମ ଆସି ଏ ଦେଶକୁ ପ୍ଲାବିତ କରିଗଲା । କିନ୍ତୁ ଓଡ଼ିଆ ଜାତିର ଦେବତା ଜଗନ୍ନାଥେ ଅଟଳ ମହାମେରୁ ପରି ରହିଲେ । ଓଡ଼ିଆ ସଂସ୍କୃତିର ଇତିହାସରେ ଏହା ହେଉଛି ଗୋଟାଏ 'ମେରୁ ମନ୍ଦର' ଘଟଣା । ଓଡ଼ିଆଜାତି ଜଗନ୍ନାଥ ପୀଠ ମାଧ୍ୟମରେ ପୃଥିବୀର ବିଭିନ୍ନ ଦେଶବାସୀଙ୍କୁ ଲୋକ ସଂସ୍କୃତିର ଏ ମହାମନ୍ତ୍ର ପ୍ରଚ୍ଚର କରିଆସିଲ୍—"ଭାଇ ! ଅନ୍ୟର ଯାହା ଭଲ କଥା, ତାକୁ ଗ୍ରହଣ କରିବାକୁ କେବେ ପଛେଇ ଯାଅ ନାହିଁ । କିନ୍ତୁ ନିଜତ୍ୱକୁ ଯେପରି ଭୁଲି ନଯାଅ, ସେଥିପାଇଁ ଚିର-କାଳ ସଜାଗ ରହ ।"

## ବିଚିତ୍ର ଏ ପୀଠ

ବାସ୍ତବରେ ଏ ପୀଠ ବଡ଼ ବିଚିତ୍ର । ଆଜି ୧୯୮୯ ଖ୍ରୀଷ୍ଟାବ୍ଦରେ ଭାରତର ବହୁ ଲୋକ ପୁରୀକୁ ଆସି ଭାବ-ଗଦ୍‌ଗଦ୍ କଣ୍ଠରେ କହିବାର ଏ ଲେଖକ ଶୁଣିଛି—"ଯାହା ହେଉ, ସମଗ୍ର ଭାରତବର୍ଷରେ ଏଭଳି ଗୋଟାଏ ସ୍ଥାନ ଅଛି, ଯେଉଁଠାରେ ଜାତି ପ୍ରଥାର ଘୃଣ୍ୟ ବନ୍ଧନକୁ ପଦାଘାତ କରି ସମସ୍ତେ ଏକାଠି ବସି ଖାଇ ପାରିବେ, ଏ କଥା ଶୁଣିଲେ ମନରେ ବିଚିତ୍ର ଭାବ ଜାତ ହୁଏ ।"

ଭାରତର ବିଭିନ୍ନ ଅଞ୍ଚଳରେ ସୁପ୍ରସିଦ୍ଧ ଦେବଦେବୀ ଅଛନ୍ତି । ସେମାନେ ଭାରତର ପ୍ରଚଳିତ କୌଣସି ଏକ ନିର୍ଦ୍ଦିଷ୍ଟ

ଧର୍ମମତ ବା ଧାରାର ପ୍ରତୀକ କିମ୍ବା ଅଧିଦେବତା ରୂପେହିଁ ପୂଜା ପାଉଛନ୍ତି । ଧର୍ମର [illegible] ଅଳ୍ପ କେତୋଟି ଜାଗା ଅଛି, ଯେଉଁ ପୀଠର ଦେବତାଙ୍କୁ ଗୋଟିଏ ଦୁଇଟି ଧର୍ମମତରେ ସମନ୍ୱିତ ବିଗ୍ରହ ରୂପେ ଗ୍ରହଣ କରାଯାଏ, ଯେପରି କି, ଦକ୍ଷିଣ ଭାରତର 'ଆପ୍ୟାୟନ' ମନ୍ଦିର । କିନ୍ତୁ ଏ ଭଳି ମହାପୀଠ ଭାରତ ବର୍ଷରେ ନାହିଁ, ଯାହାକୁ ସମସ୍ତ ମତବାଦୀ ନିଜର ବୋଲି ସ୍ୱୀକାର କରନ୍ତି । ପ୍ରକୃତରେ ଏ ହେଉଛନ୍ତି—ଜଗନ୍ନାଥ—ଜଗତର ନାଥ —ସମସ୍ତଙ୍କର ଦେବତା ସିନା, କୌଣସି ଏକ ନିର୍ଦ୍ଦିଷ୍ଟ ଧର୍ମମତର ନୁହେ । ଏହିପରି ଏକ ଭାବନାରେ ଉଦ୍‌ବୁଦ୍ଧ ହୋଇ ଭକ୍ତ କବି ଧାନକୃଷ୍ଣ ଦାସ ତାଙ୍କ 'ଜଗମୋହନ ଛାନ୍ଦ'ରେ ଗାଇଥିଲେ—

"ଆଉ ଯେ ନଥିବ କାହିଁ ବ୍ରହ୍ମାଣ୍ଡେ ଦେଖିଲି ନାହିଁ
ନୋହିଚି ନୋହିବ ଏଡ଼େ ବଡ଼ ଠାକୁର ।"

ବଡ଼ ଆଶ୍ଚର୍ଯ୍ୟ ଲାଗେ, ଆମର ଏହି ମହାଦେବତାଙ୍କ ପୀଠରେ ଭାରତର କୌଣସି ଧର୍ମ ପ୍ରଚାରକ ନିଜର ମୁଦ୍ରା ଅଙ୍କିତ କରିପାରିଲି ନାହିଁ । ଶଙ୍କର, ରାମାନୁଜ, ମଧ୍ୱ, ନିମ୍ବାର୍କ, ବଲ୍ଲଭ, ଓ ଶ୍ରୀ ଚୈତନ୍ୟ, ନାନକ ପ୍ରଭୃତି—ଏ ମହାଦେବତାଙ୍କୁ ସ୍ୱୀକାର କରିଛନ୍ତି, ଏହାଙ୍କର ଆଶୀର୍ବାଦ ଭିକ୍ଷା କରିଛନ୍ତି । କିନ୍ତୁ କେହି ଜଣେ ଏହାଙ୍କୁ ତାଙ୍କ ନିଜର ବୋଲି ପ୍ରତିପାଦନ କରିପାରି ନାହାନ୍ତି । ହୁଏତ ତିନି ଦେବତାଙ୍କୁ ଭାରତର ତିନୋଟି ମୁଖ୍ୟ ଧର୍ମମତ ଆବୃତ କରି ରଖିଛନ୍ତି, ଯଥା—ଜଗନ୍ନାଥ—ବୈଷ୍ଣବମତ ସୁଭଦ୍ରା--ଶାକ୍ତମତ, ବଳଭଦ୍ର—ଶୈବମତ । ଅଥଚ, ଜଗନ୍ନାଥ ପୀଠ କୌଣସି ସମ୍ପ୍ରଦାୟର ରଙ୍ଗରେ ରଞ୍ଜିତ ନୁହେ । ସର୍ବୋ-

ପର, ନୃତତ୍ତ୍ୱ ଓ ପରମ୍ପରାରେ ସେ ହୋଇଛନ୍ତି 'ଅନାର୍ଯ୍ୟ'— ଶବର ଦେବତା !! ସମସ୍ତ ନଦୀ ବରଂ ସମୁଦ୍ରକୁ ପ୍ରବାହିତ ହୁଅନ୍ତି । ସେମାନେ ସମୁଦ୍ର ଅଙ୍ଗରେ ଲୀନ ହୋଇ ଯାଆନ୍ତି ସିନା, ନିଜ ନାମରେ ସମୁଦ୍ରକୁ ପରିଚିତ କରାଇପାରନ୍ତି ନାହିଁ ।

ବାସ୍ତବିକ୍, ବିଶ୍ୱସଂସ୍କୃତିର ଇତିହାସରେ ଏ ଭଳି ଅନୁଷ୍ଠାନ ବିଶ୍ୱ ବନ୍ଦନୀୟ ।

## ଶ୍ରୀମନ୍ଦିର

ଜଗନ୍ନାଥ ପୀଠ ବହୁ ସହସ୍ର ବର୍ଷ ତଳୁ ବିଦ୍ୟମାନ । କିନ୍ତୁ ଆଜି ଆମେ ଯେଉଁ ବଡ଼ ଦେଉଳ ଦେଖୁଥାଉଁ, ତାହା ନିର୍ମିତ ହୋଇଥିଲା ପ୍ରାୟ ଆଠଶହ ବର୍ଷ ତଳେ । ଏତେ ବଡ଼ ମନ୍ଦିର ନିର୍ମାଣ କିଛି ଅଳ୍ପ କାଳର ସୃଷ୍ଟି ନୁହେ । ଓଡ଼ିଶାରେ ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗଦେବ ଏ ମହା ମନ୍ଦିର ଆରମ୍ଭ କରିଥିଲେ ଏବଂ ଅନଙ୍ଗ ଭୀମଦେବଙ୍କ ସମୟରେ ଏହା ପୂର୍ଣ୍ଣତା ଲାଭ କରିଥିଲା । ଏହାଙ୍କ ଆଗରୁ ଯଯାତିକେଶରୀ ଆଉ ଟିକିଏ ଛୋଟିଆ ଦେଉଳ ତିଆରି କରିଥିଲେ । ପୁଣି, ବହୁ କାଳ ପୂର୍ବେ ମହାରାଜା ଇନ୍ଦ୍ରଦ୍ୟୁମ୍ନ କୁଆଡ଼େ ହଜାରେ ହାତ ଉଚ୍ଚର ଦେଉଳ ତୋଳାଇ-ଥିଲେ । ମାତ୍ର ଦ୍ୱାଦଶ ଶତାବ୍ଦୀର ମନ୍ଦିରହିଁ ଆଜି ଆମେ ଦେଖିବାକୁ ପାଉଛୁ । ପୁରୀ ଦେଉଳକୁ ଚାରି ଭାଗରେ ବିଭକ୍ତ କରାଯାଇପାରେ । ଯେଉଁ 'ଦେଉଳ' ଭିତରେ ରତ୍ନ ସିଂହାସନ ଉପରେ ଠାକୁରମାନେ ବିଜେ କରିଛନ୍ତି, ତାହାର ନାମ 'ବିମାନ' । ତାର ପୂର୍ବ ପଟକୁ, ତାକୁ ଲାଗି କରି ଅଛି 'ଜଗମୋହନ', ପ୍ରଥମେ ଏ ଦୁଇଟିହିଁ ନିର୍ମିତ

ହୋଇଥିଲା । ଜଗମୋହନର ପୂର୍ବ ପଟକୁ ନାଟମନ୍ଦିର (ଯାହା ଭିତରେ ଗରୁଡ଼ ଖମ୍ବ ଅଛି) ଏବଂ ତାକୁ ଲାଗିକରି, ତା'ର ପୂର୍ବ ପଟକୁ ଅଛି 'ଭୋଗ ମଣ୍ଡପ' । ନାଟ ମନ୍ଦିର ଓ ଭୋଗ ମଣ୍ଡପ ପରବର୍ତ୍ତୀ କାଳରେ ସଂଯୋଗ କରାଯାଇଅଛି । ମତାନ୍ତରେ, ଜଗମୋହନ ମଧ୍ୟ 'ବିମାନ' ଅପେକ୍ଷା ପରବର୍ତ୍ତୀ ।

## ଶ୍ରୀମନ୍ଦିରର କାରୁକାର୍ଯ୍ୟ

ଲିଙ୍ଗରାଜ ମନ୍ଦିର ଓ କୋଣାର୍କ ମନ୍ଦିରର ବାହାର ପାଖ, ତଳୁ ଉପରୁ ପର୍ଯ୍ୟନ୍ତ ଯେପରି ବିବିଧ ଓ ବିଚିତ୍ର କାରୁକାର୍ଯ୍ୟରେ ପରିପୂର୍ଣ୍ଣ, ପୁରୀ ମନ୍ଦିର ମଧ୍ୟ ସେହିପରି ବିବିଧ କାରୁକାର୍ଯ୍ୟରେ ପରିପୂର୍ଣ୍ଣ; କିନ୍ତୁ ପ୍ରାୟ ଦୁଇ ଶହ ବର୍ଷ ପୂର୍ବେ (କିମ୍ବା ଅଧିକ କାଳ ପୂର୍ବରୁ) ସମୁଦ୍ରର ଲୁଣିଆ ପବନ ବାଉରୁ ଶିଳା ମୂର୍ତ୍ତି-ମାନଙ୍କୁ ରକ୍ଷାକରିବା ଲାଗି (ତଥା ମନ୍ଦିରକୁ ମଧ୍ୟ) ମନ୍ଦିର ଗାତ୍ରକୁ ବାହାର ପଟେ ଚୂନ ପ୍ରଲେପଦ୍ୱାରା ଆବୃତ କରିଦିଆଯାଇଛି । ତଥାପି, ମନ୍ଦିର ଦେହରେ କେତୋଟି ମୂର୍ତ୍ତି ଅଛି, ଯାହା କି ଚୂନ ଦ୍ୱାରା ଆବୃତ କରାଯାଇ ନାହିଁ । ମନ୍ଦିରର ସୂକ୍ଷ୍ମ କାରୁକାର୍ଯ୍ୟ ଜାଣିବାପାଇଁ ସେହି କେତୋଟି ମୂର୍ତ୍ତି ନମୁନା ରୂପେ ଗ୍ରାହ୍ୟ ।

ଜଗନ୍ନାଥଙ୍କର ପ୍ରାଚୀନ ଇତିହାସ ତ ଦୂରର କଥା । ଗତ ପାଞ୍ଚ ଶତାବ୍ଦୀର ଇତିହାସ ମଧ୍ୟ ଭଲ ଭାବରେ ଜାଣିହୁଏ ନାହିଁ । ତଥାପି, ଏ କଥା ସୁନିଶ୍ଚିତ ଯେ, ଅନ୍ତତଃ ନବମ ଶତାବ୍ଦୀରୁ ସମଗ୍ର ଭାରତ ବର୍ଷର ହଜାର ହଜାର ଯାତ୍ରୀ ମୁକ୍ତି ଓ ଶାନ୍ତି କାମନାରେ ଶ୍ରୀକ୍ଷେତ୍ରକୁ ଆସୁଅଛନ୍ତି ।

# ରଥ ଯାତ୍ରା

ରଥଯାତ୍ରାରେ ଏବେ ଲକ୍ଷ ଲକ୍ଷ ଲୋକ ରୁଣ୍ଡ ହେଉଛନ୍ତି । ଯାତ୍ରୀମାନଙ୍କ ଲାଗି ଅଧିକରୁ ଅଧିକ ଦୃଷ୍ଟି ଦିଆଯାଉଛି । ଗଲ ନବ କଳେବର ବେଳେ ହୋଇଥିବା ବ୍ୟବସ୍ଥା ତହିଁର ଏକ ଦୃଷ୍ଟାନ୍ତ । ରଥଯାତ୍ରାର ଇତିହାସ 'ଉଲ୍ଟା ସେତୁକ, ଘୋଡ଼ା ସେତୁକ ।' ଶୁଣାଯାଏ, ପୂର୍ବେ ପୁରୀ ଦାଣ୍ଡ ଭିତର ଦେଇ ନଦୀ ପ୍ରବାହିତ ହେଉଥିବା ବେଳେ ଛଅଟି ରଥ ତିଆରିହେଉଥିଲା— ନଈ ଏ ପଟେ ତିନୋଟି, ସେ ପଟେ ତିନୋଟି ବ୍ୟବହୃତ ହେଉ-ଥିଲା । ତଥାପି ଏଥିର ପୂର୍ଣ୍ଣାଙ୍ଗ ଇତିହାସ ଖୋଜ ବାହାର କରିବାକୁ ପଡ଼ିବ । ଏବେ କେବଳ ଅଠରନଳା ପୋଲ ଅଛି; ମାତ୍ର ନଦୀ ନାହିଁ । ଏହି ନଦୀ ଯେତେବେଳେ ଜୀବନ୍ତ ଥିବ, ଶ୍ରୀକ୍ଷେତ୍ରକୁ ଆସୁଥିବା ଲକ୍ଷ ଲକ୍ଷ ଯାତ୍ରୀଙ୍କ ସହିତ ତା'ର ସମ୍ପର୍କ ଥିବ ବଡ଼ ନିବିଡ଼ । ତା'କୁ ମଧ୍ୟ ଖୋଜ ବାହାର କରିବାକୁ ପଡ଼ିବ । ଏହି ମୃତ ନଦୀକୁ ଯଦି ଏକ କୃତ୍ରିମ ହ୍ରଦରେ ପରିଣତ କରାଯାଇ ପାରନ୍ତା ତେବେ ପର୍ଯ୍ୟଟକମାନଙ୍କ ପକ୍ଷରେ ସାନ୍ଧ୍ୟକାଳୀନ ନୌକା ବିହାର ବଡ ଉପଭୋଗ୍ୟ ହୁଅନ୍ତା ।

ରଥଯାତ୍ରା ହିନ୍ଦୁମାନଙ୍କର ପରମ ପବିତ୍ର ଯାତ୍ରା । ପୂର୍ବେ ରଥ ଚକ ତଳେ ଆତ୍ମହତ୍ୟା କରି ମୁକ୍ତି ପାଇବାର ବାସନା ମଧ୍ୟ କେହି କେହି ପୋଷଣ କରୁଥିଲେ । ଆଜିକାଲି ଆଉ ସେ ମନୋ-ଭାବ ହୁଏ ତ ନାହିଁ, ପରିସ୍ଥିତି ମଧ୍ୟ ନାହିଁ । ତଥାପି ଚନ୍ଦ୍ରମଣ୍ଡଳରେ କଳଙ୍କପରି ଜନମନ-ଆନନ୍ଦଦାୟକ ଏହି ରଥଯାତ୍ରା ଭିତରେ ରଥ ଉପରୁ ଅଶ୍ଳୀଳ ଗୀତ ପରିବେଷଣ ରହିଯାଇଛି । ଯେ ନିଜ ଗର୍ଭରେ

ଦୁନିଆର ସବୁ କଥାକୁ ସ୍ଥାନ ଦେଇଛନ୍ତି, ଯେ ସବୁକଥାର ସ୍ରଷ୍ଟା, ତେଣୁ, ଅଶ୍ଳୀଳତା ମଧ୍ୟ ଯାହାଙ୍କଠାରେ ଆଧାରିତ, ଯେ ବୋଧହୁଏ, ତାକୁ ମଧ୍ୟ ଛାଡ଼ି ପାରି ନାହାନ୍ତି । ନୀତିକାରଙ୍କ କହିଯାଇଛନ୍ତି— "ବିଷ ବଲ୍ଲୀଟିକୁ ମଧ୍ୟ ଯେ ଲଗାଇଥାଏ, ସେ ତାକୁ ନିଜ ହାତରେ ଉପାଡ଼ି ଫିଙ୍ଗିଦେଇ ପାରେ ନାହିଁ ।" ବାସ୍ତବିକ୍ ଜଗନ୍ନାଥଙ୍କର ରହସ୍ୟଠାରୁ, ଲକ୍ଷ ଲକ୍ଷ ଲୋକଙ୍କ ଆଗରେ ଅଶ୍ରାବ୍ୟ, ଅକଥ୍ୟ, ଅନୁଚ୍ଚାର୍ଯ୍ୟ, ଅଶ୍ଳୀଳ ଗୀତର ପରିବେଷଣ ଆହୁରି ଅଧିକ ରହସ୍ୟମୟ !!

—*—

# ଜଗନ୍ନାଥଙ୍କ ସମ୍ପର୍କରେ ଦୁଇଟି

## ସୂଚନା

ଜଗନ୍ନାଥ ଓଡ଼ିଶାର ସର୍ବଶ୍ରେଷ୍ଠ ସମ୍ପଦ । ଓଡ଼ିଆ ଜାତି ଏହି ସମ୍ପତ୍ତି ହରାଇଲେ ଏକାବେଳକେ ଶ୍ରୀହୀନ ହୋଇପଡ଼ିବ । ଏବେ ମଧ୍ୟ ଭାରତର ବିଭିନ୍ନ ଅଞ୍ଚଳର ଲକ୍ଷ ଲକ୍ଷ ଲୋକ ଜଗନ୍ନାଥଙ୍କ ବାଟେ ହିଁ ଓଡ଼ିଆଙ୍କୁ ଚିହ୍ନନ୍ତି । କିନ୍ତୁ ଏ ପର୍ଯ୍ୟନ୍ତ ଜଗନ୍ନାଥଙ୍କ ସମ୍ପର୍କରେ ବହୁ କଥା ଅଜ୍ଞାତ ରହିଯାଇଛି । ମନେହୁଏ, ଜଗନ୍ନାଥଙ୍କର ଅତୀତ ଇତିହାସ ଜାଣିବା ପାଇଁ ହୁଏତ ବହୁଯୁଗ ବିତିଯିବ । କିମ୍ବା, ବହୁ ଯୁଗ ବିତିବା ପରେ ମଧ୍ୟ, ଅଜ୍ଞାନର ଅନ୍ଧକାର ଆହୁରି ଘନୀଭୂତ ହୋଇଯିବ । ଏହାର ଅର୍ଥ ନୁହେ ଯେ, ଗବେଷଣା ବଳରେ ଜଗନ୍ନାଥଙ୍କର ଆଦିମ ଇତିହାସ ସମ୍ପର୍କରେ ନୂଆ ନୂଆ ତଥ୍ୟ ମିଳିବ ନାହିଁ । କଥା ହେଉଛି, ନୂଆ ନୂଆ ତଥ୍ୟ ଏବେ ବି ମିଳୁଛି । ପୁଣି, ଭବିଷ୍ୟତରେ ଆହୁରି ନୂତନ ତଥ୍ୟମାନ ଅବଶ୍ୟ ଆମ୍ଭମାନଙ୍କର ଦୃଷ୍ଟିକୁ ଆସିବ । କିନ୍ତୁ ଯେତିକି ନୂଆ ନୂଆ ତଥ୍ୟ ମିଳୁଛି ଜଗନ୍ନାଥଙ୍କର ବ୍ୟାପକତା ସମ୍ପର୍କରେ ସେତିକି ସେତିକି ଜଟିଳ ଓ ଅସମାଧେୟ ସମସ୍ୟାମାନ ଗବେଷକମାନଙ୍କ ଆଖି ଆଗରେ ଠିଆହେଉଛି । ଏଥିରୁ ଅନୁମିତ ହେଉଅଛି ଯେ, ଭବିଷ୍ୟତରେ ଅନେକ ତଥ୍ୟ ଉଦ୍‌ଘାଟିତ ହେବ ସତ, କିନ୍ତୁ ତାହା ଫଳରେ ଜଗନ୍ନାଥଙ୍କର ଉତ୍ପତ୍ତି ଏବଂ ବ୍ୟାପକତା ସମ୍ପର୍କୀୟ ଧାରଣା ଜଟିଳରୁ ଜଟିଳତର ହୋଇ-

ଉଠିବ । ତେବେ, ଆମର କାମନା, ଏହିଭଳି ଏକ ସମ୍ଭାବନା ଅସତ୍ୟ ହେଉ ଏବଂ ଜଗନ୍ନାଥଙ୍କର ପ୍ରାଚୀନତମ ଇତିହାସ, ତାଙ୍କର କୃପାରୁ ଜଟିଳତର ନ ହୋଇ ସ୍ପଷ୍ଟତର ହେଉ ।

ଏଠାରେ ମୁଁ ଜଗନ୍ନାଥଙ୍କର ଅଜ୍ଞାତ ଇତିହାସ ସମ୍ପର୍କରେ ଦୁଇଟି କଥା ଉଲ୍ଲେଖ କରୁଅଛି । ପ୍ରଥମଟି ଜଗନ୍ନାଥଙ୍କ ରଥ ଯାତ୍ରାରେ ଅଶ୍ଳୀଳ ଗୀତର ପରିବେଷଣ । ଦ୍ୱିତୀୟଟି ସୁଦୂର ମଙ୍ଗୋଲିଆରେ ଜଗନ୍ନାଥଙ୍କର ସଙ୍କେତ ।

ଜଗନ୍ନାଥଙ୍କର ରଥଯାତ୍ରାରେ ଏବଂ ଭୁବନେଶ୍ୱର ଲିଙ୍ଗ-ରାଜ ମହାପ୍ରଭୁଙ୍କ ଅଶୋକାଷ୍ଟମୀ ରଥଯାତ୍ରାରେ ଅଶ୍ଳୀଳ ସଙ୍ଗୀତ ବୋଲାଯାଏ । ରଥ ଚାରିପଟେ ଥିବା ହଜାର ହଜାର ଲୋକ ତାହା ଶୁଣନ୍ତି । ଆଜକୁ ପ୍ରାୟ ତିରିଶ ବର୍ଷ ତଳେ ଏଭଳି ଅଶ୍ଳୀଳ ଗୀତ ବିରୁଦ୍ଧରେ ଓଡ଼ିଶାର କେତେ ଜଣ ଉଚ୍ଚ ଶିକ୍ଷିତ ଲୋକ ସ୍ୱର ଉତ୍ତୋଳନ କରିଥିଲେ । ସେହି ସମୟରୁ ମୋ ମନରେ ଗୋଟିଏ ପ୍ରଶ୍ନ ଜାଗ୍ରତ ରହିଅଛି । ସମାଧାନ କରିବାକୁ ଯୁକ୍ତି ଖୋଜୁଛି । କିନ୍ତୁ ସମାଧାନ କରିପାରି ନାହିଁ । ପ୍ରାୟ ଦଶବର୍ଷ ତଳେ ସାଂସ୍କୃତିକ ବ୍ୟାପାର ବିଭାଗର ଡାଇରେକ୍ଟର ଶ୍ରୀ ବିମଳକିଶୋର ମିଶ୍ରଙ୍କ ସହିତ ଏ ବିଷୟରେ ଆଲୋଚନା ହୋଇଥିଲା । କିନ୍ତୁ ପ୍ରଶ୍ନ ରହିଲା ଅସମାଧେୟ । ଓଡ଼ିଆମାନଙ୍କର ଗୌରବମୟ, ଧାର୍ମିକ ମହୋତ୍ସବରେ ଏଭଳି ଅଶ୍ଳୀଳ ଗୀତ ବୋଲାଯାଏ ନା ପୃଥିବୀର ଆଉ କେଉଁ ଦେଶରେ ଏଭଳି ଚଳଣି ରହିଛି, ଏହା ଜାଣିବା ପାଇଁ ଭାରତର ଏବଂ ଭାରତ ବାହାରର ବହୁ ବିଶିଷ୍ଟ ଲୋକଙ୍କୁ ପଚାରିଛି ।

ଥରେ ଆମେରିକାରୁ ଜଣେ ପର୍ଯ୍ୟଟକ ଆସିଥିଲେ । ଯେତେଦୂର ମନେ ପଡ଼ୁଛି, ତାଙ୍କର ନାମ ମୋଷ୍ଟ୍ ଜୁସିସ୍ । ଓଡ଼ିଶା ସମ୍ପର୍କରେ ତାଙ୍କର ଗୋଟିଏ ମନ୍ତବ୍ୟ, ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗ ପକ୍ଷରୁ ପ୍ରକାଶ ପାଉଥିବା **Tourism Newsletter** ରେ ପ୍ରକାଶିତ ହୋଇଅଛି । ପୁରୀ ସହରଠାରୁ ପ୍ରାୟ ୭ ମାଇଲ ଉତ୍ତରରେ ଥିବା ଫୁଲପାଟଣା (ବାଲିଘାଇ) ନିକଟସ୍ଥ ସମୁଦ୍ର ବେଳା ଦେଖି ସେ ଏଭଳି ବିମୁଗ୍ଧ ହୋଇଗଲେ ଯେ, କହିଲେ "ସମଗ୍ର ପୃଥିବୀରେ ଏଭଳି ମନୋରମ ବେଳାଭୂମି ନାହିଁ ।" କଥା ପ୍ରସଙ୍ଗରେ ସେ କୋଣାର୍କ ମନ୍ଦିର ଏବଂ ପୁରୀ ମନ୍ଦିରର ସୌନ୍ଦର୍ଯ୍ୟ ଏବଂ ମହତ୍ତ୍ୱ ବର୍ଣ୍ଣନା କରି, ଓଡ଼ିଶାର ଉଚ୍ଚ ପ୍ରଶଂସା କଲେ । ତାଙ୍କ ସହିତ ଏହି ଆଲୋଚନା ହେଲା ବେଳେ ପର୍ଯ୍ୟଟନ ବିଭାଗର ସେକ୍ରେଟେରୀ ଏବଂ ଡାଇରେକ୍ଟର ଶ୍ରୀଯୁକ୍ତ ଅଖିଳ ନାରାୟଣ ତିୱାରି ମଧ୍ୟ ତାଙ୍କ ଗହଣରେ ଥିଲେ ।

କୋଣାର୍କ ଏବଂ ଜଗନ୍ନାଥ ମନ୍ଦିର କଥା ପଡ଼ୁ ପଡ଼ୁ କୋଣାର୍କର ନିର୍ମାଣ କୌଶଳ ଏବଂ ଜଗନ୍ନାଥଙ୍କ ରଥ ଯାତ୍ରା କଥା ମଧ୍ୟ ପଡ଼ିଲା । ସେ ବହୁବାର ପୃଥିବୀର ବହୁ ଦେଶ ଭ୍ରମଣ କରିଛନ୍ତି ବୋଲି କହିବାରୁ ମୁଁ ତାଙ୍କୁ ଦୁଇଟି କଥା ପୃଥିବୀର ଅନ୍ୟ କୌଣସି ଦେଶରେ ଅନ୍ତତଃ ୨୦୦୦ ବର୍ଷ ପୂର୍ବେ ରଥଯାତ୍ରା ପ୍ରଚଳିତ ଥିବା ସେ ଜାଣନ୍ତି କି ? ଯଦି ଜାଣନ୍ତି, ରଥଯାତ୍ରା ଦିନ ରଥ ଉପରୁ ଅନ୍ୟ କେଉଁଠାରେ ଅଶ୍ଳୀଳ ସଙ୍ଗୀତ ଶୁଣାଇବାର ଚଳଣି ଅଛି ବୋଲି ସେ ଜାଣନ୍ତି କି ?

ମୋ ପ୍ରଶ୍ନର ଉତ୍ତରରେ ସେ ଯାହା କହିଲେ, ତାହା ମୁଁ ତାଟକା ହୋଇଗଲି । ସେ କହିଲେ, ଆଫ୍ରିକାର ପୂର୍ବ

ବେଲା ଭୂମିରେ, ଇଜିପ୍ଟର ଠିକ୍ ଦକ୍ଷିଣରେ, ଗୋଟିଏ ବଡ଼ ମନ୍ଦିର ଠିଆହୋଇଛି । କୋଣାର୍କ ମନ୍ଦିରର ସମୟ ହେଉଛି ପ୍ରାୟ ୧୨୫୦ ଏ.ଡ଼ି. । କିନ୍ତୁ ଆଫ୍ରିକାର ଏହି ମନ୍ଦିରର ସମୟ ପ୍ରାୟ ୧୨୫୦ ବି.ସି. । ସେ ମନ୍ଦିର ଏଭଳି ଭାବରେ ତିଆରି ହୋଇଥିଲା ଯେ ସୂର୍ଯ୍ୟ ଉଦୟ ହେବା ସଙ୍ଗେ ସଙ୍ଗେ ସୂର୍ଯ୍ୟଙ୍କର କିରଣ ଆସି ମନ୍ଦିରର ସିଂହାସନ ଉପରେ ସ୍ଥାପିତ ହୋଇଥିବା ଦେବ ମୂର୍ତ୍ତିର କପାଳ ସ୍ପର୍ଶ କରୁଥିଲା ।

ଆହୁରି ମଧ୍ୟ, ସେହି ମନ୍ଦିରରେ ପୁରୀର ରଥଯାତ୍ରା ପରି ରଥଯାତ୍ରା ହୁଏ । ସେହି ରଥଯାତ୍ରାରେ ହଜାର ହଜାର ଲୋକ ଯୋଗଦିଅନ୍ତି ଏବଂ ରଥ ଉପରୁ ଅଶ୍ଳୀଳ ସଙ୍ଗୀତ ପରିବେଷଣ କରାଯାଏ ।

ଏହା ଶୁଣିବା ପରେ, ଜଗନ୍ନାଥଙ୍କର ପ୍ରାଚୀନତା ସମ୍ପର୍କରେ କୌତୂହଳ-ଉଦ୍ଦୀପକ ପ୍ରଶ୍ନମାନ ଜାଗ୍ରତ ହେଲା ଏବଂ ମନେହେଲା ବୋଇତ ବାଣିଜ୍ୟକାରୀ ଓଡ଼ିଆମାନେ ଖାଲି ଯେ ଜାଭା, ବାଲି ପ୍ରଭୃତିକୁ ଯାଇ ନିଜ ସଂସ୍କୃତିର ବିଜୟ ବୈଜୟନ୍ତୀ ଉଡ଼ାଇଥିଲେ, ତାହା ନୁହେ, ଭାରତର ଦକ୍ଷିଣ ପଶ୍ଚିମ ଅଞ୍ଚଳକୁ ମଧ୍ୟ ଯାତ୍ରାକରି, 'ଜଗନ୍ନାଥ ସଂସ୍କୃତି' ପ୍ରତିଷ୍ଠା କରିଥିଲେ । ତେବେ, ଏ ସମ୍ପର୍କରେ ଏକ ସିଦ୍ଧାନ୍ତରେ ଉପନୀତ ହେବା ପୂର୍ବରୁ ଓଡ଼ିଶାର ଦଳେ ଗବେଷକ ଆଫ୍ରିକାର ସେହି ପ୍ରାଚୀନ ମନ୍ଦିର ଦେଖି ଆସିବା ଦରକାର । ମୋର ଏଭଳି ଏକ ସ୍ୱପ୍ନ ଯଦି କାର୍ଯ୍ୟକାରୀ ହୁଏ, ତେବେ ଓଡ଼ିଶାର ଗୌରବକେତନ ଜଗନ୍ନାଥଙ୍କ ସମ୍ପର୍କରେ ଆମର ଜ୍ଞାନର ଦିଗ୍‌ବଳୟ ସମ୍ପ୍ରସାରିତ ହୁଅନ୍ତା ।

ତା'ପରେ ତିବ୍ବତ କଥା । ଭାରତର ବହୁ ସହସ୍ର କିଲୋମିଟର ଉତ୍ତରରେ ମଙ୍ଗୋଲିୟା ରାଜ୍ୟ । ଏକ ସମୟରେ ସେଠାରେ ଥିଲା ବୌଦ୍ଧ ଧର୍ମର ଅଖଣ୍ଡ ପ୍ରଭାବ । ବର୍ତ୍ତମାନ କିନ୍ତୁ ତାହା ଏକ ସାମ୍ୟବାଦୀ ରାଜ୍ୟ । ଆମ ଦେଶ ପରି ଧର୍ମାନୁଷ୍ଠାନ ବା ଧର୍ମସଂସ୍ଥା ସେଠାରେ ନାହିଁ । କିନ୍ତୁ ସେ ରାଜ୍ୟର ରାଜଧାନୀ ଉଲାନ୍‌ବାଟୁରଠାରେ ଗୋଟିଏ ଲାମା ମନ୍ଦିର (ଲାମା ଟେମ୍ପଲ) ଅଦ୍ୟାପି ରହିଅଛି । ସେଠାରେ ପ୍ରାୟ ସାଢ଼େ ପାଞ୍ଚ ଶହ ବୌଦ୍ଧ ମୂର୍ତ୍ତି ପୂଜିତ ହେଉଅଛନ୍ତି । ପ୍ରତିଦିନ ସେଠାରେ ବୌଦ୍ଧ ସାହିତ୍ୟ ପାରାୟଣ କରାଯାଏ । ମନ୍ଦିରର ଆୟତନ ସୁବିଶାଳ; ତାହାର କେନ୍ଦ୍ରସ୍ଥଳ ବା ଗର୍ଭ ଗୃହକୁ ଯିବାବେଳେ ଦ୍ୱାରର ଦୁଇ ପାର୍ଶ୍ୱରେ କଳା ଓ ଧଳା ରଙ୍ଗର ଦୁଇଟି ମୂର୍ତ୍ତି ଆମ ଆଖିରେ ପଡ଼େ । ମନେ ହୁଏ ସେ ଦୁଇଟି ମୂର୍ତ୍ତି ଜଗନ୍ନାଥ ଓ ବଳଭଦ୍ରଙ୍କର ପ୍ରତୀକ । ପ୍ରସାଦ ପୂଜା ବିଧି, ଭୂତଳଶାୟୀ ହୋଇ ମନ୍ଦିରକୁ ଯିବାର ବିଧି ପ୍ରଭୃତି ଦୃଷ୍ଟିରୁ ଏବଂ ତାନ୍ତ୍ରିକ ବୌଦ୍ଧ ଧର୍ମର ଇତିହାସ ଦୃଷ୍ଟିରୁ ସେ ଅଞ୍ଚଳ ସଙ୍ଗେ କଳିଙ୍ଗର ସମ୍ପର୍କ ଥିବା ଅସମ୍ଭବ ନୁହେଁ । ସେଠାର ଜଣେ ଭଦ୍ରଲୋକ କହିଲେ, 'ଆମ ଏଠାରେ (ଉଲାନ୍-ବାଟୁରଠାରେ) ହଜାର ହଜାର ତାଳପତ୍ର ପୋଥି ରହିଛି । ଏ ସବୁ ତାଳପତ୍ର ଭାରତର ପୂର୍ବାଞ୍ଚଳରୁ ଆସିଛି ବୋଲି ଆମେ ଶୁଣିଛୁ । ଆପଣଙ୍କ ଦେଶ ତ ଗରମ ଦେଶ । ତେଣୁ ତାଳପତ୍ର ପୋଥି ବେଶୀ ଦିନ ରହେ ନାହିଁ । କିନ୍ତୁ ଆମର ଏଠି ପୋଥିଗୁଡ଼ିକ ସହଜରେ ନଷ୍ଟ ହୁଏ ନାହିଁ । ଏ ପର୍ଯ୍ୟନ୍ତ ପଢ଼ାଯାଇ ନଥିବା ହଜାର ହଜାର ପୋଥି ଆମର ରହିଛି । ଡକ୍‌ଟର ରଘୁବୀର ଏବଂ କୃଷ୍ଣଚନ୍ଦ୍ର ପାଣ୍ଡେ ନାମକ ଦୁଇ ଜଣ ଭାରତୀୟ ଆସି ଆମର କେତେକ ତାଳପତ୍ର ପୋଥିର ବିଷୟବସ୍ତୁ ସମ୍ପର୍କରେ ଅନୁଧ୍ୟାନ କରିଥିଲେ ।"

ମୋର ମନେ ହେଲା, ଓଡ଼ିଶାରୁ କେତେ ଜଣ ଐତିହାସିକ ଯଦି ଭଲନ୍ଦାଜ୍ ଯାଆନ୍ତେ ସେଠାର ମୂର୍ତ୍ତିଗୁଡ଼ିକର ଇତିହାସ ସଂଗ୍ରହ କରନ୍ତେ, ସୁରକ୍ଷିତ ଅଥଚ ପଢ଼ାଯାଇ ନ ଥିବା ହଜାର ହଜାର ତାଳପତ୍ର ପୋଥିରୁ କେତୋଟି ଭଲଭାବରେ ଦେଖନ୍ତେ, ତାହାହେଲେ ପ୍ରାୟ ୧୫୦୦ ବର୍ଷ ପୂର୍ବେ ଜଗନ୍ନାଥ ଦେଶର ସଂସ୍କୃତି ସେଠାକୁ ଯାଇଥିବା ସମ୍ପର୍କରେ କେତୋଟି ବସ୍ତୁକର ତଥ୍ୟ ହୁଏ ତ ଆମର ଉପଲବ୍ଧ ହୁଅନ୍ତା । କଳା ଧଳା ଦୁଇଟି ମୂର୍ତ୍ତିର ରହସ୍ୟ ଅବଶ୍ୟ ଉଦ୍‌ଘାଟିତ ହୋଇପାରନ୍ତା ।

ଏ ଦିଗରେ ଓଡ଼ିଶା ସରକାର ଏବଂ ଓଡ଼ିଶାର ବିଶ୍ୱ-ବିଦ୍ୟାଳୟଗୁଡ଼ିକ ଦୃଷ୍ଟି ଦେବା ବିଧେୟ । ଜଗନ୍ନାଥଙ୍କର ତଥା ଓଡ଼ିଶାର ସାଂସ୍କୃତିକ ଇତିହାସ ପାଇଁ ଏହା ଦ୍ୱାରା ବହୁ ନୂତନ ଉପାଦାନ ମିଳିପାରିବା ବିଶେଷ ସମ୍ଭବପର ।

--*—

# ଶ୍ରୀମନ୍ଦିରରେ ବଜ୍ରପାତ

ପ୍ରାୟ ନବେ ବର୍ଷ ତଳର କଥା । ଏହା ଗଳ୍ପ ନୁହେଁ, ନିରାଟ ସତ କଥା ।

ପୁରୀ ସହରରେ ଚହଳ ପଡ଼ିଗଲା । ସ୍ଥାନେ ସ୍ଥାନେ ଲୋକେ ସେଇ ଗୋଟିଏ କଥା କୁହାକୁହି ହେଲେ, "ଜଗନ୍ନାଥଙ୍କ ଭୋଗ କିପରି ହେବ ?" ଜଣେ ଜଣଙ୍କୁ ପଚାରିଲା, "ସୁନା ଥାଳୀରେ ବଡ଼ ଠାକୁରଙ୍କ ଭୋଗ କିପରି ହେବ ?" ଆଉ କିଏ କହିଲା, "ଠାକୁରେ ସ୍ନାନ କିପରି କରିବେ ?"

କହେ। ! କଥା କ'ଣ ? କଥାଥା ହେଉଛି, ହରିଙ୍କୁ ଯେଉଁ ସ୍ନାନ କରାଯାଏ ସେ ପାଣି ନଳା ଭିତର ଦେଇ ବାହାରକୁ ବାହାରିଯିବା କଥା । ମାତ୍ର ଦୁଇ ଦିନ ହେଲା ପାଣି ବାହାରକୁ ନ ଯାଇ ଭିତରେ ରହୁଛି । ତେଣୁ ରତ୍ନବେଦୀର ଗୃହକଡ଼ଯାକ ପାଣି ଭର୍ତ୍ତି ହୋଇଗଲାଣି । ଶହ ଶହ ମାଠିଆ ପାଣି ରତ୍ନବେଦୀ ଗୃହ-ପଟରେ ଜମିରହୁଛି । ଏଥିରେ ହରିଙ୍କ ଭୋଗ ଚଳିବ କିପରି ? ଭୋଗରାଗ କିପରି ହେବ ? ସହରରେ ଚହଳ ପଡ଼ିଗଲା ।

ଏ ଖବର ରାଜାଙ୍କ କାନକୁ ଗଲା । ରାଜା ବଉଳା ଲୋକଙ୍କ ପରାମର୍ଶ ଲୋଡ଼ିଲେ । କାନ୍ଥ ଭିତରେ ଯେଉଁ ନାଳବାଟେ ପାଣି ଯାଏ, ତା ଭିତରେ କିଛି ଗୋଟାଏ ରହିଯାଇଥିବା ସୁନିଶ୍ଚିତ ।

କିନ୍ତୁ କାନ୍ଥ ଏତେ ବହଳ ଯେ, ତା ଭିତରେ ନଳ ପୂରାଇବା ସମ୍ଭବ ନୁହେ । କାରଣ ନଳ କୁଆଡ଼େ ସିଧା ମିଳିଲା ନୁହେଁ । ବାସ୍ତୁଶାସ୍ତ୍ରୀମାନେ ଯାଇ ଚେଷ୍ଟା କଲେ । କିନ୍ତୁ କିଛି ଫଳ ହେଲା ନାହିଁ । କିଭଳି ଭାବରେ ଏ ବିପଦ ଦୂର କରିହେବ, ତାହା ସମସ୍ତଙ୍କ ମନକୁ ଘାଣ୍ଟି ପକାଇଲା । ଦେଖୁ ଦେଖୁ ପନ୍ଦର କୋଡ଼ିଏ ଦିନ ହୋଇଗଲା । ପାଣି ଯାଇ ପ୍ରବେଶ ଦ୍ୱାର ଛୁଇଁଲା । ଅଥଚ କିଛି କରିହେଲା ନାହିଁ ।

ରାଜଗୁରୁ ରାଜାଙ୍କୁ ପରାମର୍ଶ ଦେଇ, ରାତିରେ 'ଅଧା' ପଢ଼ିବାକୁ କହିଲେ । ରାଜା ସେକଥା କଲେ । ପାହାନ୍ତି ପହରକୁ ତାଙ୍କୁ ଟିକିଏ ଶୁଇନିଦ ଲାଗି ଆସିଲା । ସ୍ୱପ୍ନରେ ତାଙ୍କୁ କିଏ କହିଲା, 'କାଲି ଉପରବେଳା ସବୁ ଠିକ୍ ହୋଇଯିବ ।''

ରାଜା ଚମକି ଉଠିଲେ । ଯେଉଁମାନେ ବାହାରପଟେ ଥିଲେ, ଶଙ୍କିତହୋଇ ତାଙ୍କୁ ଚାହିଁରହିଲେ । ସକାଳୁ ଚାରିଆଡ଼େ ଖବର ହୋଇଗଲା, ''ଆଜି ଏ ବିପଦ ଦୂର ହୋଇଯିବ । ବିପଦ କିପରି ଦୂରହେବ କେହି କଳ୍ପନା କରିପାରିଲେ ନାହିଁ । ଦିନ ବାରଟା ପୂର୍ବରୁ ହଜାର ହଜାର ଲୋକ ଯାଇ ଦେଉଳରେ ବସି ରହିଲେ । କାର୍ତ୍ତିକମାସର ଆଦ୍ୟ ଭାଗ । ହଜାର ହଜାର ଯାତ୍ରୀ ଉପସ୍ଥିତ । ସକାଳୁ ଆକାଶ ଥିଲା ନିର୍ମଳ । ହଠାତ୍ ଦିନ ୨ଟା ବେଳକୁ ଆକାଶ ମେଘାଚ୍ଛନ୍ନ ହୋଇଗଲା । ଦେଖୁ ଦେଖୁ ଅସରାଏ ଠାଣୁଆ ବର୍ଷା ହେଲା । ବାହାରର ଲୋକେ ଭିତରକୁ ଦୌଡ଼ିଆସିଲେ । ଭୀଷଣ ଘଡ଼ଘଡ଼ି ଧ୍ୱନି ଲୋକଙ୍କୁ ଚମକାଇଦେଲା । ବଡ଼ ଦେଉଳର ବାହାରେ ଥିବା ଲୋକେ ଦେଖିଲେ ଦକ୍ଷିଣ ଦ୍ୱାର ଉପରେ ବଜ୍ରପାତ ହୋଇଛି । କିନ୍ତୁ ମୁକ୍ତିମଣ୍ଡପ ସଭାମଣ୍ଡପରେ ଥିବା ଲୋକେ

ଦେଖିଲେ, କଳ୍ପବଟ ଉପରେ ବଜ୍ରପାତ ହୋଇଛି । ଅଥଚ, ନାଟ ମନ୍ଦର ଭିତରେ (ଯେଉଁଠାରେ ଗରୁଡ଼ଖମ୍ବ ଅଛି) ଥିବା ଲୋକେ ଦେଖିଲେ, କଳ୍ପବଟ ଭିତରଦେଇ ଏକ ଜ୍ୱଳନ୍ତ ଅଗ୍ନିଖଣ୍ଡ ଆଗି ପିଛୁଳାକେ ଆସି ନାଟମନ୍ଦର ଭିତରେ (ଠିଆହୋଇଥିବା ଲୋକଙ୍କ ମୁଣ୍ଡର ହାତେ ଉଚରେ) ପଶିଗଲା । କିନ୍ତୁ ସିଧା ସଳଖେ ଯାଇ ଆରପଟର ଦ୍ୱାରବାଟେ ବାହାରପଟକୁ ଗଲାନାହିଁ । ନାଟ ମନ୍ଦର ଭିତରେ ପଶିବା ପରେ, ଗୋଲରୂପକ ଅଗ୍ନିଖଣ୍ଡଟି ଠିକ୍ ଗରୁଡ଼ଖମ୍ବର ସମ୍ମୁଖରେ ହଠାତ୍ ରତ୍ନସିଂହାସନ ଆଡ଼କୁ ଯାଇ, କୁଆଡ଼େ ଉଭେଇ ଗଲା !!

ଲୋକେ ସ୍ତମ୍ଭିତ । ବାହାରେ ବର୍ଷା ଚାଲିଛି । ବଡ଼ଦେଉଳ ବଜ୍ରର ଆଘାତରେ ମଡ଼େଇପଡ଼ିବ ବୋଲି କେହି କେହି ଆଶଙ୍କା କଲେ । ଏପରି କ'ଣ ହେଲା ବୋଲି ସମସ୍ତେ ଚାରିଆଡ଼େ ଚାହିଁ ରହିଲେ । କିଛି ସମୟ ପରେ ଜଗମୋହନ ଭିତରୁ ବିସ୍ଫୋରଣସୂଚକ ଧ୍ୱନି ଶୁଣାଗଲା ।

ଟିକଏ ସମୟ ପରେ ଲୋକେ କୁହାକୁହି ହେଲେ— "ଆରେ ଏ ! ରତ୍ନସିଂହାସନ ଚାରିପଟେ ଯେଉଁ ପାଣି ଜମିଥିଲା, ତାହା ତଳକୁ ଖସି ଆସୁଛି । କି ଆଶ୍ଚର୍ଯ୍ୟର କଥା । "ଜୟ ଜଗନ୍ନାଥ" ଧ୍ୱନିରେ ଶ୍ରୀମନ୍ଦିର ଉଚ୍ଛୁଳି ପଡ଼ିଲା । ଅଳ୍ପ ସମୟ ଭିତରେ ମେଘ କୁଆଡ଼େ ଚାଲିଗଲା ।

ଦେଖୁ ଦେଖୁ ରାଜା ଆସି ସିଂହଦ୍ୱାରରେ ପହଞ୍ଚିଗଲେ । ବୀର କାହାଳୀ ବାଜିଉଠିଲା । ବାଇଶି ପାହାଚ ଉପରେ ପ୍ରବଳ ଭିଡ଼ । ଲୋକଙ୍କ ମୁଖରେ—"ଜୟ ଜଗନ୍ନାଥ, ଜୟ ଗଜପତି

ମହାରାଜାଙ୍କର ଜୟ” ଧ୍ୱନି । ଏତିକିବେଳେ ଦେଉଳ କରଣ ଆସି ମହାରାଜାଙ୍କୁ ଜଣାଇଲେ, “ନାଳ ଭିତରେ ଗୋଟାଏ ବଡ଼ ସାପ ରହିଯାଇଥିଲା । ବଜ୍ରର ନିଆଁ ନାଳ ଭିତରେ ପଶି ଆର ପଟକୁ ବାହାରିପଡ଼ିବା ଫଳରେ ସାପଟା ଖଣ୍ଡଖଣ୍ଡ ହୋଇ ବାହାରି ପଡ଼ୁଛି ।”

ରାଜା ସିଧା ଯାଇ ସେ କଥା ଆଖିରେ ଦେଖିଲେ । ସେଦିନ ରାତିତମାମ ହଜାର ହଜାର ଲୋକ ସେ ଦୃଶ୍ୟ ଦେଖି ଅବାକ୍ ହୋଇଗଲେ ।

୧୯୩୭ ଖ୍ରୀଷ୍ଟାବ୍ଦରେ ମୋ ପିତା ସ୍ୱର୍ଗତ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମାଙ୍କ ସହିତ ମୁଁ ପୁରୀ ଆସିଥିଲି, ପ୍ରଥମା ପରୀକ୍ଷା ଦେବାପାଇଁ । ସେତିକିବେଳେ ସେ ମତେ ଏହି କଥା କହିଥିଲେ । ଏହାକୁ କିନ୍ତୁ ଗୋଟାଏ ପ୍ରାଚୀନ କିମ୍ବଦନ୍ତୀ ବୋଲି ମୁଁ ଧରିନେଇଥିଲି । ସ୍ୱର୍ଗତ ଅନିରୁଦ୍ଧ ଦାଶ I.A.S. ଓଡ଼ିଶା ସରକାରଙ୍କ ଅଧୀନରେ ସାଂସ୍କୃତିକ ବିଭାଗର ସେକ୍ରେଟାରୀ ଥିବାବେଳେ ତାଙ୍କୁ ଏକଥା ମୁଁ କହିଥିଲି । ସେ ମତେ କହିଥିଲେ—“ଏହା କିମ୍ବଦନ୍ତୀ ନୁହେ । ଏ ଘଟଣା ପ୍ରକୃତରେ ଘଟିଥିଲା । ଦିଲ୍ଲୀରେ ଭାରତ ସରକାରଙ୍କ ଦପ୍ତରରେ ଏହାର ବିବରଣୀ ରହିଛି । ମୁଁ ଜଗନ୍ନାଥ ମନ୍ଦିର ଉପରେ ଯେଉଁ ଗ୍ରନ୍ଥ ଲେଖୁଛି, ତହିଁରେ ଏହି ବିବରଣୀ ପ୍ରଦାନ କରିବି ।”

ଯେଉଁମାନଙ୍କର ସୁବିଧା ଅଛି, ସେମାନେ ଦିଲ୍ଲୀ ଦପ୍ତରରୁ ସେହି ପ୍ରମାଣ ଆଣିପାରିଲେ ଗୋଟାଏ ବଡ଼ କଥା ହୁଅନ୍ତା ।

ଜଗନ୍ନାଥ ମନ୍ଦିରର ବିଚିତ୍ର ଘଟଣାବଳୀ ଯେବେ ନିର୍ଣ୍ଣୟ ହୁଏ, ମୁଁ ଭାବୁଛି, ଏହି ଘଟଣାଟି ତହିଁର ଗୋଟିଏ ବାଲକଣା ମାତ୍ର ।

—*—

# ନୀଳଚକ୍ର=ନୀଳ+ଚକ୍ର

'ନୀଳଚକ୍ର'—ଦୁଇଟି ଶବ୍ଦରେ ଗଢ଼ା—ନୀଳ ଓ ଚକ୍ର। ପୁରୀ ବଡ଼ଦେଉଳ ଓଡ଼ିଆ ଶିଳ୍ପ ଓ ସଂସ୍କୃତିର ଯଦି ଏକ ବିରାଟ ପ୍ରତିନିଧି ବୋଲି ଧରାଯାଏ, ତେବେ 'ନୀଳଚକ୍ର' ଆହୁରି ମହନୀୟ ଭାବରେ ପ୍ରତିଭାତ ହୁଏ। କାରଣ, ସେହି ମହାମନ୍ଦିରର ମୁକୁଟ ରୂପେ ଏହି 'ନୀଳଚକ୍ର' ଯୁଗ ଯୁଗ ଧରି ଠିଆହୋଇଛି। ବିଷ୍ଣୁ ମନ୍ଦିର ଉପରେ ଚକ୍ର ରହିବା କଥା। ଏହି ଚକ୍ର ଭଗବାନ୍ ବିଷ୍ଣୁଙ୍କର ଆୟୁଧ। ତାତ୍ତ୍ୱିକ ବିଚାରରେ ଯଦିଓ ନୀଳଚକ୍ର ସୁଦର୍ଶନ ଚକ୍ର ନୁହେଁ, ତଥାପି ଲୋକ ଦୃଷ୍ଟିରେ ଏହା ମଧ୍ୟ ସେହି ସୁଦର୍ଶନ ଚକ୍ରର ଉତ୍କଳୀୟ ରୂପାନ୍ତର।

ନୀଳ ଓ ଚକ୍ର, ଏ ଦୁଇଟିଯାକ ଶବ୍ଦ ଦାର୍ଶନିକ ବ୍ୟଞ୍ଜନାରେ ପରିପୂର୍ଣ୍ଣ। ଗୋଟାଏ ଅର୍ଥରେ ଯାହା ନୀଳ ତାହା ମଧ୍ୟ କୃଷ୍ଣ। ଅମରକୋଷରେ ନୀଳ ଓ କୃଷ୍ଣ ଏକ ଅର୍ଥର ପ୍ରକାଶକ। ସୃଷ୍ଟିର ପ୍ରାରମ୍ଭରେ ଅନ୍ଧକାର ଥିଲା। ପ୍ରାଚୀନ ଧର୍ମଶାସ୍ତ୍ର ଓ ଧର୍ମଗ୍ରନ୍ଥ-ମାନଙ୍କରେ କୁହାଯାଇଛି, ପ୍ରଥମେ ଅନ୍ଧକାର ଥିଲା। ବେଦରେ ଅଛି **"ତମ ଆସୀତ୍ ତମସା ଗୂଢ଼ମଗ୍ରେ × × × ଇଦମ୍।"** ବାଇବେଲ ପ୍ରଭୃତିରେ ମଧ୍ୟ ଆଦିମ ଅସ୍ତିତ୍ୱର ଏହି ଭଳି ସୂଚନା ଅଛି। ଯେଉଁ ସୂର୍ଯ୍ୟଙ୍କ ଲାଗି ଆଜ ଆଲୋକ ବା ଦିବସର ପରି-କଳ୍ପନା, ତାଙ୍କର ପୂର୍ବରୁ ଓ ତାଙ୍କ ପରେ ମଧ୍ୟ ଅନ୍ଧକାର।

ସୁତରାଂ ଯାହା ଚିରନ୍ତନ ସତ୍ୟ, ତାହା ଖାଲି ଅନ୍ଧକାର—ଅନ୍ଧକାର ଅନ୍ଧକାର । ଏହି ଅନ୍ଧକାରହିଁ କାଳନାଥ ଶିବ ଓ କାଳୀଙ୍କର ସ୍ୱରୂପ ପ୍ରକାଶକ । କାଳ ଅନ୍ଧକାର-ମୟ । ଆଗକୁ ଯାହା ଆସିବ, ଜାଣିବାର ଉପାୟ ନାହିଁ । ସୁତରାଂ, ଅନ୍ଧକାରମୟ । ବର୍ତ୍ତମାନ କାଳରୂପକ ଦ୍ୱାର ବାଟ ଦେଇ ଯାହା ଅତୀତକୁ ଚାଲିଯାଉଛି, ତାହା ମଧ୍ୟ ବସ୍ତୁତଃରେ ବିଲୀନ ହେଉଅଛି । କାଳ ସମସ୍ତଙ୍କର ବିନାଶକାରୀ । ସେଥିପାଇଁ କାଳ କହିଲେ ମରଣକୁ ବୁଝାଯାଏ, କାଳ କହିଲେ ମରଣ ଦେବତା ଯମଙ୍କୁ ମଧ୍ୟ ବୁଝାଯାଏ । ଯେଉଁ ମହାଦେବ, ଶିବ ବା ମଙ୍ଗଳମୟ ପ୍ରଳୟ କାଳରେ ସେ ଧ୍ୱଂସ ସଂହାର ମୂର୍ତ୍ତି, ସେହି ଅବସ୍ଥାରେ ସେ କାଳ ବା ମହାକାଳ ରୂପେ ପରିଚିତ ହୁଅନ୍ତି । ତାଙ୍କର ଅର୍ଦ୍ଧାଙ୍ଗିନୀ ସେହି ଅବସ୍ଥାରେ ଗୌରୀ ନୁହନ୍ତି, ଉମା ନୁହନ୍ତି, ଶକ୍ତି ନୁହନ୍ତି; ସେ ଅବସ୍ଥାରେ ସେ ହେଉଛନ୍ତି କାଳୀ, ସଂହାର କାରିଣୀ । ସୁତରାଂ କଳାରଙ୍ଗ ମଧ୍ୟ ଦେଇ ଶିଳ୍ପୀମାନେ ତଥା ଦାର୍ଶନିକମାନେ ବିଶ୍ୱର ଯାହା ଚରମ ସତ୍ୟ ବା ପରମ ଅସ୍ତିତ୍ୱ, ତହିଁର ସଙ୍କେତ ପ୍ରଦାନ କରିଥାଆନ୍ତି ।

ଏହି 'କୃଷ୍ଣ' ତତ୍ତ୍ୱର ପୃଷ୍ଠଭୂମି ଉପରେ ନୀଳତ୍ୱର ବିକାଶ । ନୀଳତ୍ୱ ଉତ୍କଳୀୟ ସଂସ୍କୃତିରେ ଗୌରବାବହ । କାରଣ, ଏ ଦେଶର ମହାମନ୍ଦିର ନୀଳଗିରି ଉପରେ ପ୍ରତିଷ୍ଠିତ । ଏ ଦେଶର ଆଦିମ ମହାଦେବତା ନୀଳମାଧବ ରୂପେ ପୂଜିତ । ସର୍ବୋପରି ଏ ଦେଶର ମହାମନ୍ଦିର ଉପରେ ନୀଳଚକ୍ର ବିରାଜିତ । ନୀଳତ୍ୱ ବା ସବୁଜ ବର୍ଣ୍ଣ ପ୍ରାଣର ସଙ୍କେତ ପ୍ରଦାନକରେ । କୃଷ୍ଣ, ରାମଚନ୍ଦ୍ର ପ୍ରଭୃତି ନୀଳ କାନ୍ତି ବିଗ୍ରହ । ଆକାଶ ନୀଳବର୍ଣ୍ଣ, ମହାସମୁଦ୍ର ନୀଳବର୍ଣ୍ଣ, ବୃକ୍ଷଲତା

ନୀଳବର୍ଣ୍ଣ, ଯେଉଁଠାରେ ଶସ୍ୟ ଶ୍ୟାମଳ ଭୂମି, ଯେଉଁଠାରେ ବିରାଟ ନୀଳାସ୍ତରଣ, ଯେଉଁଠାରେ ଧନ ସମ୍ପଦର ଭଣ୍ଡାର, ଯେଉଁଠାରେ ସୁଖ ସୌଭାଗ୍ୟର ଅଖଣ୍ଡ ପ୍ରବାହ, ଯେଉଁଠାରେ ଆଶା ଓ ଆନନ୍ଦର ଚିରନ୍ତନ ପ୍ରସ୍ରବଣ । ସୁତରାଂ, ନୀଳଚକ୍ରର ନୀଳତ୍ୱ ଭିତରଦେଇ ଭାବୁକ ଯେତେବେଳେ ତାହାର ଦାର୍ଶନିକ ଦୃଷ୍ଟି ପ୍ରସାରିତ କରେ, ସେ ଦେଖିବାକୁ ପାଏ—ନୂତନ ଜୀବନ, ବିରାଟ ଆଶା, ବିମଳ ଆନନ୍ଦ, ବିଚିତ୍ର ସମ୍ପଦ ଓ ପ୍ରାଣ-ପ୍ରବାହର ବିଲକ୍ଷଣ ବ୍ୟାପକତା ।

ସେହିପରି 'ଚକ୍ର', ଆଜି ମଧ୍ୟ ଆମେ 'ଗୋଲ ଟେବୁଲ ବୈଠକ'ର ଆୟୋଜନ କରିଥାଉ । ବର୍ତ୍ତୁଳତା ବା ଗୋଲାକାର ସବୁ ଦିଗରେ ସମାନତା, ସମାନ ଗୁରୁତ୍ୱ, ସମାନ ମହତ୍ତ୍ୱ, ସମାନ ସୁଯୋଗ, ସମାନ ଅଧିକାର ପ୍ରଭୃତିର ସୂଚନା ଦେଇଥାଏ । ଗୋଟିଏ ଗୋଲାକାର ଟେବୁଲର ଚତୁର୍ଦ୍ଦିଗରେ ସଭାର ସଦସ୍ୟମାନେ ବସି ଆଲୋଚନା କଲେ ପ୍ରତ୍ୟେକଙ୍କୁ ଦେଖିବାର ଓ କହିବାର ଯେଉଁ ସୁବିଧା ପାଆନ୍ତି, ଚୌକୋଣିଆ ଟେବୁଲ ଚାରିପଟେ ବସିଲେ ସେଭଳି ସୁବିଧା ସମ୍ଭବପର ହୋଇନଥାଏ । ନୀଳଚକ୍ର ସମ୍ପର୍କରେ ସେହି କଥା । ଜଗନ୍ନାଥ ମନ୍ଦିରରେ ଜାତିର ସଙ୍କୀର୍ଣ୍ଣତା ନାହିଁ, ଉଚ୍ଚ-ନୀଚର ଭେଦଭାବ ନାହିଁ, ଛୁଆଁ-ଛୁତ ଦୋଷର କଳଙ୍କ ନାହିଁ । କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ତାଙ୍କର 'ବୈଦେହୀଶ ବିଳାସ' କାବ୍ୟ ମୂଳରେ ବହୁ ଦେବତାଙ୍କର ବନ୍ଦନା କରିବାକୁ ଯାଇ ଯେଉଁ ମଙ୍ଗଳାଚରଣ କରିଅଛନ୍ତି, ତହିଁରେ ଜଗନ୍ନାଥ ମହାପ୍ରଭୁଙ୍କର ବନ୍ଦନା ମଧ୍ୟ ସ୍ଥାନ ପାଇଅଛି । ସେ ଲେଖିଅଛନ୍ତି—

"ବିଶ୍ୱଜ ଅଖଣ୍ଡିତ ମଣ୍ଡଳେ ।" ଅର୍ଥାତ୍, ନୀଳାଚଳ ଧାମରେ, 'ଅ' = ନିଷେଧ = ବାରଣ = ବଡ଼ମାନେ ଶ୍ରେଷ୍ଠଙ୍କୁ କରିବା = ସମାଜର ଉଚ୍ଚେ ପ୍ରତିଷ୍ଠିତ ଲୋକେ ଅନ୍ୟମାନଙ୍କୁ ନିଜର ସମାନ ସ୍ଥାନ ନ ଦେବା" —ଏହି କଥାଟି ଖଣ୍ଡିତ ହୋଇଯାଇଛି । ସୁତରାଂ, ଓଡ଼ିଆ ସଂସ୍କୃତିରେ ମୈତ୍ରୀଭାବ ବା ନିଜର ହୃଦୟରୁ ପୃଥିବୀର ସମସ୍ତଙ୍କପ୍ରତି ସ୍ନେହ ଧାରା ଛୁଟାଇବାର ଯେଉଁ ବିଶେଷତ୍ୱ ସ୍ୱୀକୃତ ହୋଇଅଛି, ତାହା ନୀଳଚକ୍ରରେ ରୂପାୟିତ ହୋଇଅଛି । ଯେ ନିତାନ୍ତ ଆତ୍ମକେନ୍ଦ୍ରିକ, ତାହାର ହୃଦୟ ଭିତରୁ ବା ପ୍ରାଣର କେନ୍ଦ୍ରସ୍ଥଳରୁ ଅନ୍ୟକୁ ଭଲ ପାଇବାର ଧାରା ଚତୁର୍ଦ୍ଦିଗରେ ପ୍ରବାହିତ ହୁଏ ନାହିଁ । ନିଜ ପ୍ରତି, ନିଜ ପରିବାର ପ୍ରତି, ନିଜ ବନ୍ଧୁ ବାନ୍ଧବଙ୍କ ପ୍ରତିହିଁ ତାହାର ସ୍ନେହଧାରା ପ୍ରବାହିତ ହୁଏ । କିନ୍ତୁ, ଯେଉଁ ଲୋକ ଏକାନ୍ତରେ ମୈତ୍ରୀବାଦୀ ଓ ସାମ୍ୟବାଦୀ, ସମସ୍ତ ଦିଗରେ ତାହାର ପ୍ରାଣ-ପ୍ରବାହ ଛୁଟିଥାଏ । ନୀଳଚକ୍ରରେ ଯେଉଁ ଅଷ୍ଟବିଧ ବିଭାଗ ଅଛି, ତାହା ପୂର୍ବ, ଆଗ୍ନେୟ ଓ ଦକ୍ଷିଣ ପ୍ରଭୃତି ଆଠ ଦିଗର ପ୍ରତୀକ । ଅନ୍ୟ ଭାବରେ କହିଲେ, ପୃଥିବୀର ବିଭିନ୍ନ ଦେଶରେ, ବିଭିନ୍ନ କୋଣରେ ଓ ଯେ କୌଣସି ସ୍ଥାନରେ ଯେଉଁ ସବୁ ଲୋକେ ଅଛନ୍ତି, ସେମାନଙ୍କ ପ୍ରତି ସମାନ ଭାବରେ ହୃଦୟର ସ୍ନେହ ପ୍ରବାହ ଛୁଟାଇବାର ସଙ୍କେତ ନୀଳଚକ୍ରରେ ରୂପାୟିତ ହୋଇଅଛି ।

ନୀଳଚକ୍ର ଯଥାର୍ଥରେ ବିଶ୍ୱମୈତ୍ରୀ ଓ ପରମ ସାମ୍ୟନୀତିର ମହାପ୍ରତୀକ । ଏହି ନୀଳଚକ୍ର ସୂଚନା ଦିଏ ଯେ, ଓଡ଼ିଆ ଜାତି କାଳେ କାଳେ ବିଶ୍ୱର ଚରମ ଅସ୍ତିତ୍ୱ ପ୍ରତି ସଚେତନ ଅଛି ଏବଂ ବିଶ୍ୱମାନବ ସମାଜକୁ ନିଜର କରି, ସମସ୍ତଙ୍କୁ ସମାନ

ସୁଖସୌଭାଗ୍ୟର ସୁଯୋଗ ଦେବାପାଇଁ କୃତ-ସଙ୍କଳ୍ପ ହୋଇଅଛୁ । ଓଡ଼ିଶାର ଆଜ ଯେଉଁମାନେ ଅଧିବାସୀ, ସେମାନେ ବିଶ୍ୱମାନବର ଏକାନ୍ତ କଲ୍ୟାଣ ବିଧାୟକ ଏହି ମହାନ୍ ଆଦର୍ଶରେ ଉଦ୍‌ବୁଦ୍ଧ ହୁଅନ୍ତୁ ଏବଂ ସଂକୀର୍ଣ୍ଣ ବାଦ-ବିବାଦରେ ବିଖଣ୍ଡିତ ବିଶିଷ୍ଟ ମାନବ ସମାଜକୁ ନୂତନ ଆଲୋକ ଦେବାପାଇଁ ବାକ୍ୟବୀର ନହୋଇ କର୍ମବୀର ହୁଅନ୍ତୁ ।



# 'ଅଭଡ଼ା' ଓ 'ନିର୍ମାଲ୍ୟ'ର ଅର୍ଥନୈତିକ ବିଚାର

ଭାତ ଆମର ପ୍ରଧାନ ଖାଦ୍ୟ । ଆମ ଦେଶରେ ଦୁଇ ପ୍ରକାରେ ଭାତ ଖିଆଯାଏ, 'ତବତ' ଓ 'ପଖାଳ' । ସଂସ୍କୃତ 'ତପ୍ତ' ଶବ୍ଦ 'ତପତ' ହୋଇ, ପରେ ଲୋକ ମୁଖରେ 'ତବତ' ହୋଇ-ଯାଇଛି । ଗଞ୍ଜାମ ପ୍ରଭୃତିରେ ଏହି 'ତବତ' ଶବ୍ଦର ପ୍ରୟୋଗ ଅତି ସାଧାରଣ । ଅନ୍ୟ କେତେକ ଅଞ୍ଚଳରେ କେବଳ 'ଗରମ' ଶବ୍ଦ ଏହି ଅର୍ଥରେ ପ୍ରୟୋଗ ହୁଏ । ମୋଟ ଉପରେ ଦୁଇଟିଯାକ ଶବ୍ଦର ଅର୍ଥ ସମାନ । 'ପଖାଳ' ଶବ୍ଦ ସଂସ୍କୃତ 'ପ୍ରକ୍ଷାଳନ'ରୁ ଆସିଛି । ତେବେ 'ପଖାଳ' ହେଉ ବା 'ଗରମ' ହେଉ, ଆମ ଦେଶରେ ଏହି ପ୍ରକାରେହିଁ ଭାତ ଖିଆଯାଏ ।

ଭାତ ଖାଇଲା ବେଳେ କଂସା, ଥାଳୀ ଓ ପତ୍ର ପ୍ରଭୃତି ବ୍ୟବହୃତ ହୁଏ । ଯେଉଁମାନେ ପଖାଳ ଖାଆନ୍ତି ସେମାନେ କଂସାରେ ଖାଆନ୍ତି । ପତ୍ରରେ ଖାଇବା ଲୋକେ କଦଳୀ ପତ୍ର, ଶିଆଳି ବା ଶାଳୁଆ ପତ୍ର ପ୍ରଭୃତିରେ ତିଆରି ଖଲିରେ ଖାଆନ୍ତି । ଆଜିକାଲି ଖାଇବା ବିଷୟରେ ଢଙ୍ଗ ବଦଳିଗଲାଣି । ବଡ଼ ବଡ଼ ହୋଟେଲରେ କେତେକ ବେସରକାରୀ ତଥା ସରକାରୀ ପ୍ରୀତି-ଭୋଜନରେ ମଧ୍ୟ ଭାତ, ଡାଲି, ତରକାରୀ ଗୋଟିଏ ଗୋଟିଏ ବଡ଼ ପାତ୍ରରେ ରଖି ଦିଆଯାଏ । ତହିଁରେ ବଡ଼ ବଡ଼ ଚାମଚ ମଧ୍ୟ ରଖି ଦିଆଯାଏ ।

ଖାଇବା ଲୋକେ ନିଜର ଆବଶ୍ୟକତା ଅନୁସାରେ ଅଳ୍ପ ଅଳ୍ପ କରି ଜିନିଷ ଆଣନ୍ତି । କିନ୍ତୁ ଆମର ଚଳାଚଳିତ ପଦ୍ଧତି ଅନ୍ୟ ପ୍ରକାରର । ଲୋକେ ଖାଇବାକୁ ବସିଯାଆନ୍ତି ଏବଂ ପରଷୁଣିଆ ତା' ଇଚ୍ଛା ଅନୁସାରେ ପରଷି ଯାଏ କମ୍ବା ଥାଳ, ଗିନା ପ୍ରଭୃତିରେ ପ୍ରଥମେ ଭାତ, ଡାଲି ପ୍ରଭୃତି ବାଢ଼ି ଦିଆଯାଏ ଏବଂ ଖାଇବା ଲୋକେ ସଙ୍ଗେ ସଙ୍ଗେ ଯାଇ ବସନ୍ତି । ଫଳରେ, ଭାତ ଠାରୁ ଆରମ୍ଭ କରି ରୁଚିକର ବୋଧ ନ ହେଉଥିବା ତରକାରୀ ପର୍ଯ୍ୟନ୍ତ ଅନେକ ଜିନିଷ ଖାଇବା ପାତ୍ରରେ ରହିଯାଏ । ଅଳ୍ପ କେତେକ ସ୍ଥାନରେ ଗୋରୁ-ଗାଈମାନଙ୍କ ପାଇଁ ରଖାଯାଇଥିବା ପେଜ ହାଣ୍ଡି ପ୍ରଭୃତିକୁ ସେ ଜିନିଷ ଯାଏ । ତା ନ ଦେଲେ ଶେଷକୁ ଫିଙ୍ଗି ଦିଆଯାଏ ।

ଇଏ ତ ଗଲା ଅନ୍ନ ବାଢ଼ିବା ଦୃଷ୍ଟିରୁ ଦ୍ରବ୍ୟ ନଷ୍ଟର ମାର୍ଗ ପ୍ରଦର୍ଶନ । ଏହା ଛଡ଼ା, ଖାଇବାର ପାତ୍ର ଦୃଷ୍ଟିରୁ ମଧ ଏଭଳି କ୍ଷତିର ସୂଚନା ଦିଆଯାଇପାରେ । କଦଳୀ ପତ୍ରରେ ଖାଇଲେ ଅଲକ୍ଷିତରେ ଭାତ ନଷ୍ଟ ହେବାର ବାଟ ନାହିଁ, କାରଣ, ପତ୍ରଟି ଅତି ଚିକ୍କଣ ଏବଂ ଅତି ସହଜରେ; ଶେଷ ପର୍ଯ୍ୟନ୍ତ,, ପତ୍ରର ସମସ୍ତ ଜିନିଷ ଏକାଠିକରି ତାହାର ସଦ୍‌ବ୍ୟବହାର କରାଯାଇ ପାରିବ । କିନ୍ତୁ କଦଳୀ ପତ୍ର ଅପେକ୍ଷା ଖଲିର ବହୁଳ ବ୍ୟବହାର ହୋଇଥାଏ । କେତେଗୁଡ଼ିଏ ପତ୍ର ଖଡ଼ିକାରେ ସିଲାଇକରି ଖଲି କରାଯାଏ । ଖାଇଲା ବେଳେ ବିଭିନ୍ନ ପତ୍ର ସନ୍ଧିରେ ଲୁଚିଲା ପରି ଭାତ ରହିଯାଏ, ଯଦିଓ ଏଥିପ୍ରତି ଆମେ ଦୃଷ୍ଟି ଦେଇ ନଥାଉ । ଥାଳ ଓ କଦଳୀ ପତ୍ର ତୁଳନାରେ ଖଲିରେ ଖିଆଯିବା ହାର କିଛି ନା କିଛି ଭାତ ବୃଥାରେ ନଷ୍ଟ ହୋଇଯାଉଥିବା ଏକ ବିରାଟ ସତ କଥା ।

ଦୃଷ୍ଟିକୋଣରୁ, ଖାଲି ପରିବେଷଣ ପଦ୍ଧତି ବା ଭୋଜନ ପାତ୍ର ଦୃଷ୍ଟିରୁ ନୁହେଁ, ଖାଇବାର ପ୍ରକାରଭେଦ ଦୃଷ୍ଟିରୁ ମଧ୍ୟ ଭାତ ନଷ୍ଟ ହୁଏ । ପଖାଳ ଭାତ ଖାଇବାରେ କ୍ଷତିର ମାତ୍ରା ଟିକିଏ ବେଶି । କାରଣ କଂସାରେ ପାଣି ଓ ଭାତ ଏକତ୍ର ରଖି ଖାଇବାକୁ ହୁଏ । ଯେତେ ଯତ୍ନରେ ଖାଇଲେ ମଧ୍ୟ ଶେଷକୁ କିଛି ନା କିଛି ଭାତ ରହିଯାଏ । ଆଙ୍ଗୁଠିରେ ଯେତେ ଯତ୍ନରେ ଗୋଟି ଆଣିଲେ ମଧ୍ୟ କଂସାର ପାଣି ବା ତୋରାଣିରୁ ସବୁ ଭାତ ଉଠାଇ ଆଣିହୁଏ ନାହିଁ ।

ତାହାହେଲେ ଅନୁଭବରୁ ଦେଖାଯାଉଛି, ତିନୋଟି କାରଣରୁ ବା ତିନି ପ୍ରକାର ଅନ୍ନ-ଭୋଜନ ବ୍ୟବସ୍ଥା ଦୃଷ୍ଟିରୁ ବହୁ ପରିମାଣରେ ଭାତ ନଷ୍ଟ ହୁଏ । ଡାଲି, ତାରକାରୀ, ଭଜା, ବେସର, ଚଟଣୀ ପ୍ରଭୃତିର କଥା ସ୍ୱତନ୍ତ୍ର । ଯେଉଁଭଳି ଭାବରେ ଅଲକ୍ଷିତରେ ବା ଅନିବାର୍ଯ୍ୟ ଭାବରେ ଭାତ ନଷ୍ଟ ହୁଏ, ସେଭଳି ଭାବରେ ଡାଲି, ତରକାରୀ ପ୍ରଭୃତି ନଷ୍ଟ ହେବାର ବା ଫିଙ୍ଗାଯିବାର ଆଶଙ୍କା ନାହିଁ ।

ବର୍ତ୍ତମାନ ମୁଖ୍ୟ ପର୍ଯ୍ୟଟକ ପ୍ରଦର୍ଶକ ଭାବରେ ବହୁ ବାର ଜଗନ୍ନାଥ ମନ୍ଦିରକୁ ଯିବାର ସୁବିଧା ସୁଯୋଗ ଲାଭକରି, ଶ୍ରୀମନ୍ଦିର ଭିତ୍ତିକତାରେ ଉତ୍କଳର ଅତୀତ ଗୌରବ କଥା ଚର୍ଚ୍ଚା କରିଥାଏ । ଥରେ ସିଂହଦ୍ୱାରରେ ବନ୍ଦୀ ହୋଇଥିବା ନିର୍ମାଲ୍ୟ ପସରା ଦେଖି ଜଣେ ପର୍ଯ୍ୟଟକ ତାହାର ତାତ୍ପର୍ଯ୍ୟ ସମ୍ପର୍କରେ ପ୍ରଶ୍ନ କଲେ । ଧର୍ମତତ୍ତ୍ୱ ଦୃଷ୍ଟିରୁ ଅର୍ଥାତ୍ ଜଗନ୍ନାଥ ମହାପ୍ରଭୁଙ୍କଠାରେ ଧର୍ମବିଶ୍ୱାସୀ ହିନ୍ଦୁ-ମାନଙ୍କର ଯେଉଁ ଧାରଣା ଅଛି, ସେହି ଦୃଷ୍ଟିରୁ ମୁଁ ନିର୍ମାଲ୍ୟର ଏକ ଗୌରବାବହ ଚିତ୍ର ତାଙ୍କୁ ପ୍ରଦାନକଲି । କିନ୍ତୁ ତାଙ୍କ ସହିତ

ସେଦିନ ସନ୍ଧ୍ୟାରେ ମହାପାତ୍ର ନେତାଜୀଙ୍କର ବିଷୟ କହୁ-ବେଳେ ସେହି କଥାହିଁ ତନ୍ମୟ ହୋଇ ଚିନ୍ତାକଲି । ଶ୍ରୀମନ୍ଦିରର ବିଧିବିଧାନ ମଧ୍ୟରେ ସାମାଜିକ ଜୀବନର ନିୟନ୍ତ୍ରଣ ଲାଗି ନାନାବିଧ ବ୍ୟବସ୍ଥା ଓ ନୀତି-ନିୟମର ପ୍ରବର୍ତ୍ତନ ଶ୍ରୀମନ୍ଦିରରେ କରାଯାଇଛି ବୋଲି ଆମେ ବରାବର ଶୁଣିଆସୁଛୁ । ଏପରି କି, ଜଗନ୍ନାଥଙ୍କର ନିଦ୍ରାଭଙ୍ଗଠାରୁ ଅର୍ଦ୍ଧରାତ୍ର ସମୟରେ ନିଦ୍ରା ଯିବା ପର୍ଯ୍ୟନ୍ତ ବିଭିନ୍ନ ବିଧିବିଧାନ ମଧ୍ୟରେ ମାନବର ଉତ୍ତମ ସ୍ୱାସ୍ଥ୍ୟରକ୍ଷାମୂଳକ ଉପାଦେୟ ନୀତିମାନ ଖଞ୍ଜି ଦିଆଯାଇଥିବାର ତତ୍ତ୍ୱବିତ୍‌ମାନେ କହିଥାଆନ୍ତି । ସୁତରାଂ, କେବଳ ଧର୍ମତତ୍ତ୍ୱ ଦୃଷ୍ଟିରୁ ନୁହେଁ; ସମାଜ ତତ୍ତ୍ୱ ଓ ଶରୀର ତତ୍ତ୍ୱ ତଥା ସ୍ୱାସ୍ଥ୍ୟ ତତ୍ତ୍ୱ ଦୃଷ୍ଟିରୁ ମଧ୍ୟ ଶ୍ରୀମନ୍ଦିରର ରୀତି ନୀତି ଓ ବିଧି ବ୍ୟବସ୍ଥା ଅତ୍ୟନ୍ତ ବୈଜ୍ଞାନିକ, ତାତ୍ପର୍ଯ୍ୟପୂର୍ଣ୍ଣ ଓ ମହତ୍ତ୍ୱପୂର୍ଣ୍ଣ ।

ସେଦିନ ସନ୍ଧ୍ୟାବେଳେ ଶ୍ରୀମନ୍ଦିରର ନୀତି-ନିୟମର ଏଭଳି ବ୍ୟାପକ ଆଭିମୁଖ୍ୟ ଦୃଷ୍ଟିରୁ ନିର୍ମାଲ୍ୟ କଥା ବାରମ୍ବାର ଚିନ୍ତାକଲି । ଅନ୍ନ ବ୍ୟବସ୍ଥା ମୁଖ୍ୟତଃ କୃଷିତତ୍ତ୍ୱମୂଳକ ଓ ଅର୍ଥନୀତି-ବିଷୟକ ହୋଇଥିବାରୁ ଏ ଦୁଇଟି ଦୃଷ୍ଟିକୋଣରୁହିଁ ନିର୍ମାଲ୍ୟ ରହସ୍ୟ ଉଦ୍‌-ଘାଟନ କରିବାକୁ ଚେଷ୍ଟାକଲି । ସେଦିନ ଯେଉଁଭଳି ଭାବରେ ସମାଜ-ଗଠନକ୍ଷମ, ଲୋକଚରିତ୍ର-ଗଠନକ୍ଷମ ତଥା ଅର୍ଥନୈତିକ ମଙ୍ଗଳବିଧାୟକ ଚିନ୍ତାଧାରା ମନରେ ଉଦ୍ଦୀପିତ କରିଥିଲି, ତାହା ଏଠାରେ ଲିପିବଦ୍ଧ କରୁଅଛି ।

ଭାରତ ଏକ କୃଷିପ୍ରଧାନ ଦେଶ । ଖାଲି ଭାରତ କାହିଁକି ବଞ୍ଚିବା ପାଇଁ ସମଗ୍ର ମାନବ ସମାଜ କୃଷିଜାତ ଦ୍ରବ୍ୟ ଉପରେ ନିର୍ଭର କରେ । ଧର୍ମଗୁରୁ ଯେତେବେଳେ କହିଛନ୍ତି—"ଉଦର

ନମିତ୍ତଂ ବହୁ କୁତ ବେଗମ୍", ସେତେବେଳେ କ୍ଷୁଧା-ନିବର୍ତ୍ତିକ ଅନ୍ନ ବ୍ୟବସ୍ଥାର ସର୍ବାଧିକ ଗୁରୁତ୍ୱ ପ୍ରତିହିଁ ସେ ଆମ୍ଭମାନଙ୍କର ଦୃଷ୍ଟି ଆକୃଷ୍ଟ କରିଅଛନ୍ତି । ବହୁ ଶ୍ରମ ଫଳରେ ଧାନ, ଗହମ ପ୍ରଭୃତି ଆହାର୍ଯ୍ୟ ଜନ୍ମାଯାଏ । ପ୍ରବଳ ଖରା, ବର୍ଷା, ଶୀତ ସହି କୃଷକମାନେ ଖାଦ୍ୟପଦାର୍ଥ ଉତ୍ପନ୍ନ କରନ୍ତି । ବାସ ନ ଥିଲେ ଚଳିବ, ବେଶ ନ ଥିଲେ ଚଳିବ; କିନ୍ତୁ ଅନ୍ନ (ଖାଦ୍ୟ ପଦାର୍ଥ) ନ ଥିଲେ ମୋଟେ ଚଳିବ ନାହିଁ । ଅନ୍ନର ଅଭାବରେ ମାନବ ଦାନବ ହୋଇଯାଏ । କ୍ଷୁଧା ପରମ ଚଣ୍ଡାଳ । ମାନବର ସମସ୍ତ ଚିନ୍ତା, ସାଧୁତା, ଭଦ୍ରୁ-କତା, ବିବେକଶୀଳତା ପ୍ରଭୃତିର ମୂଳୋତ୍ପାଟନ କରିବା ପାଇଁ କ୍ଷୁଧା-ଚଣ୍ଡାଳକୁ ମୁହୂର୍ତ୍ତେ ମାତ୍ର ସମୟ ଲାଗିବ ନାହିଁ । ଓଡ଼ିଶାର ଲୋମହର୍ଷଣକାରୀ ନଅଙ୍କ ଦୁର୍ଭିକ୍ଷ ବେଳେ ପ୍ରଚଣ୍ଡ କ୍ଷୁଧାର ବଶବର୍ତ୍ତୀ ହୋଇ ପିତାମାତା ମଧ୍ୟ ନିଜର ପ୍ରାଣୋପମ ସନ୍ତାନମାନଙ୍କୁ ହତ୍ୟା କରିଥିଲେ ଏବଂ ସେମାନଙ୍କର ମାଂସରେ ନିଜ ନିଜର କ୍ଷୁଧା ନିବାରଣ କରିଥିଲେ ବୋଲି କୁହାଯାଇଥାଏ ।

ଅତି ପ୍ରାଚୀନ କାଳରୁ, ସେଥିପାଇଁ, ଅନ୍ନକୁ ଓ କୃଷିଜାତ ଖାଦ୍ୟପଦାର୍ଥକୁ, ଅତି ଗୌରବପୂର୍ଣ୍ଣ ଆସନ ଦିଆଯାଇଛି । ଏପରି କି, ବେଦରେ ମଧ୍ୟ 'ଅନ୍ନଂ ବ୍ରହ୍ମ' ବୋଲି କୁହାଯାଇଛି । ବ୍ରହ୍ମଠାରୁ ବଳି ଆଉ କିଛି ବଡ଼ ତତ୍ତ୍ୱ ଭାରତ ବର୍ଷରେ ନାହିଁ । ଅନ୍ନକୁ ଦୂରଦ୍ରଷ୍ଟା ଋଷିମାନେ ବ୍ରହ୍ମର ସମକକ୍ଷ ଆସନ ଦେଇଛନ୍ତି । ଅନ୍ୟ ଭାବରେ କହିଲେ, ଅନ୍ନ ଏଭଳି ଗୋଟିଏ ଜିନିଷ, ଯାହାକୁ ଅତି ସାବଧାନ ଭାବରେ ସମ୍ମାନର ସହିତ ବ୍ୟବହାର କରିବାକୁ ହେବ, ଏହା ମଧ୍ୟ ଏଥିରୁ ଫୁଟି ଉଠୁଛି । ଏ ପର୍ଯ୍ୟନ୍ତ ଧାନ ଚାଉଳକୁ ଆମ ଦେଶର ଲୋକେ ଲକ୍ଷ୍ମୀ ଜ୍ଞାନରେ ଦେଖିଛନ୍ତି । ଉଦାହରଣ

ଦେଇ ବସିଲେ ସରିବ ନାହିଁ । ଅନେକ ଲୋକଙ୍କର ବିଶ୍ୱାସ ଯେ, ଗୋଟିଏ ସୁଦ୍ଧା ଧାନ କି ଚାଉଳ ପ୍ରତି ଅନାସ୍ଥା ଭାବ ଦେଖାଇବା ହେଉଛି ଗୋଟାଏ ଲକ୍ଷ୍ମୀଛଡ଼ା ଢଙ୍ଗ । ସେଥିପାଇଁ ପୁରାଣରେ ମହା ଧନୀ କୁବେର ଗୋଟି ଗୋଟି କରି ଶଗଡ଼ରୁ ଖସିପଡ଼ିଥିବା ଧାନ ସଂଗ୍ରହ କରୁଥିବା ବର୍ଣ୍ଣିତ ହୋଇଛି । ପଣ୍ଡିତ ନୀଳକଣ୍ଠଙ୍କର ଏକଥା ଉପରେ ଏକ ସୁନ୍ଦର ଆଲୋଚନା ପ୍ରକାଶପାଇଛି । ମୋଟ କଥା, ଜୀବନ ଧାରଣ ପାଇଁ ଅନ୍ନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ତାହା ଯେପରି ନଷ୍ଟ ନହୁଏ, ସେହି ତତ୍ତ୍ୱ ବା ଆଦର୍ଶ ନାନା ବିଧିବିଧାନ, ବ୍ୟବସ୍ଥା ଓ ଚରିତ ମାଧ୍ୟମରେ ପ୍ରତିପାଦିତ ହୋଇଅଛି ।

ଏ ସବୁ ଦୃଷ୍ଟିରୁ ବିଚାରକଲେ ନିର୍ମାଲ୍ୟର ରହସ୍ୟ ଅନେକ ପରିମାଣରେ ପ୍ରତିଭାତ ହୋଇପାରେ । ସେ ଦିନ ସନ୍ଧ୍ୟାରେ ମୋ ମନକୁ ମନ ମୁଁ ଏଭଳି ଗୋଟାଏ 'ବଳଦିଆ' ହିସାବ କଲି । ଧରାଯାଉ, ଆମର ଏହି ଓଡ଼ିଶା କଥା । ମୋଟାମୋଟି ପାଖ ଦୁଇ-କୋଟି ଲୋକ ବୋଲି ଧରାଯାଏ, ତେବେ ଦିନକୁ ହାରାହାରି ଚାରି କୋଟି ଥର ଭାତ ଖିଆଯାଏ । ଅନେକ ଲୋକ ରୁଟି ଖାଆନ୍ତି । ସେମାନଙ୍କୁ ବାଦ୍ ଦେବାକୁ ପଡ଼ିବ ସତ; ତେବେ ଅନେକ ଲୋକ ତିନି ଥର ଖାଆନ୍ତି । ଏ କ୍ଷେତ୍ରରେ ମୋଟ ହିସାବ ଠିକଏ ଏପଟ ସେପଟ ହେଲେ କିଛି ଯାଏ ଆସେ ନାହିଁ । କାରଣ ଗୋଟାଏ ପ୍ରତ୍ୟେକଙ୍କ ନୀତିଗତ କଥାର ଗୁରୁତ୍ୱ ପ୍ରତିପାଦନ ହେଉଛି ଏହି ଆଲୋଚନାର ଲକ୍ଷ୍ୟ । ସୁତରାଂ ଚାରି କୋଟି ଥର ଖାଇବାରୁ ଏସବୁ ଲାଗି କୋଟିଏ ଥର କାଟିଦିଆଯାଉ । ଆଉ ରହିଲା ତିନି-କୋଟି । ଦୁଇ ଥରର ଦୁଇ ବଖତରେ ହାରାହାରି ଶହେ ଚାଉଳର

ଘିଅ କଂସା ବା ଟଙ୍କରେ ବଢ଼ାଯାଇ ଅଲକ୍ଷିତରେ ବା ଅଜାଣତରେ ଫିଙ୍ଗିଦିଆଯାଏ ବୋଲି ଧରାଯାଉ । ତାହା ହେଲେ ଯେତୋଟି ଗୃଣ୍ଡଳର ଘିଅ ବୃଥାଟାରେ ନଷ୍ଟ ହୋଇଚାଲ୍, ତାର ମୋଟ ସଂଖ୍ୟା ହେଉଛି, ତିନିକୋଟିର ଶହେ ଗୁଣ ବା ତିନିଶହ କୋଟି । ଦିନେ ଘଣ୍ଟା ଚକ୍ରରେ ଅଧପାଏ ଗୃଣ୍ଡଳ ଆଣି, ତାକୁ ଚାରି ଭାଗ କରି, ତନ୍ମଧ୍ୟରୁ ଗୋଟିଏ ଭାଗରେ କେତେ ଗୃଣ୍ଡଳ ରହୁଛି ତାହା ଗଣିଥିଲି । ହିସାବ କରି ଦେଖିଥିଲି, ଗୋଟାଏ କେ.ଜି.ରେ ତିରିଶ ହଜାରରୁ ବେଶି ଗୃଣ୍ଡଳ ରହେ । ସେ ହିସାବ ମନେପଡ଼ିଗଲା । ତେଣୁ ମନେ ମନେ ହିସାବ କଲି, ତିନିଶହ କୋଟି ଗୃଣ୍ଡଳ ହେଉଛି ଏକ ଲକ୍ଷ କେ.ଜି. । ଗୋଟାଏ ବଡ଼ ବସ୍ତାରେ ଶହେ କେ.ଜି. ଗୃଣ୍ଡଳ ରହେ । ତେଣୁ ଏକ ଲକ୍ଷ କେ.ଜି. ହେଉଛି ଏକ ହଜାର ବସ୍ତା । ତାହା ହେଲେ ଦିନକୁ ଏକ ହଜାର ବସ୍ତା ହିସାବରେ; ବର୍ଷକର ତିନି ଶହ ଷାଠିଏ ଦିନରେ, ବୃଥାରେ ନଷ୍ଟ ହେଉଥିବା ଗୃଣ୍ଡଳର ପରିମାଣ ହେଉଛି, ତିନିଶହ ଷାଠିଏ ହଜାର ବସ୍ତା ବା ତିନି ଲକ୍ଷ ଷାଠିଏ ହଜାର ବସ୍ତା ।

ଅବଶ୍ୟ ଏହି ହିସାବରେ ସାମାନ୍ୟ ଭୁଲ ଥାଇପାରେ, ତେବେ ଆମେ ଆମର ଖାଇବା ବ୍ୟବସ୍ଥା ଦୋଷରୁ ଦୈନିକ ଶହ ଶହ ବସ୍ତା ଗୃଣ୍ଡଳ ଯେ ଅଜ୍ଞାନ ପଶୁଙ୍କ ପରି ଫିଙ୍ଗିଦେଉ-ଥାଉ, ଏଥିରେ ଲବେ ମାତ୍ର ସନ୍ଦେହ ନାହିଁ । ହଜାର ହଜାର ଭାତ ହୋଟେଲ୍‌ରେ ଦୈନିକ କେତେ ଘିଅ ଫିଙ୍ଗାଯାଏ, ତାକୁ ଦେଖିଲେ ଭାବୁକର ମନ ବିଦ୍ରୋହୀ ହୋଇଉଠିବ । ଏ ଦେଶ କାହିଁକି ଲକ୍ଷ୍ମୀଛଡ଼ା, ତହିଁରୁ ତାର ଆଂଶିକ ଉତ୍ତର ହୁଏ ତ ମିଳିଯିବ ।

ବାସ୍ତବରେ ଅଜାଣତରେ, ଲକ୍ଷ୍ମୀଙ୍କ ଉଦରେ ଆତ୍ମ ନୈମନ୍ଧନ କପରି ପ୍ରଦାଘାତ କରୁ, ଏଇ ସ୍ୱଭାବରୁ ତାଙ୍କର ଏକ ଆଭାସ ମିଳିଯାଏ ।

ବୋଧହୁଏ ସେଥିପାଇଁ, ଓଡ଼ିଆ ଜାତିର ବୁଦ୍ଧିମାନ୍ ପୂର୍ବ ପୁରୁଷଗଣ ନିର୍ମାଲ୍ୟର ପରିକଳ୍ପନା କରିଥିଲେ । ସାଧାରଣତଃ, କଦଳୀ ପତ୍ରରେ ଅଭଡ଼ା ଖିଆଯାଏ । ଖାଇବାର ପାତ୍ର ସମ୍ପର୍କରେ ଏହା ଏକ ଉପଲକ୍ଷ ମାତ୍ର । ଅର୍ଥାତ୍ ଏଭଳି ଏକ ଶକ୍ତକଣ ଜିନିଷ ଉପରେ ରଖି ଅନ୍ନ ଖାଇବା ଦରକାର ଯାହା ଫଳରେ ପ୍ରତ୍ୟେକ ଦାନା ହାତରେ ଅଣାଯାଇ ଖିଆଯାଇପାରିବ । ବିଶେଷ କଥା, ଅଭଡ଼ା ଖାଇଲାବେଳେ ତାହାଁରୁ ଗୋଟିଏ ଦାନା ଯେପରି ତଳେ ପଡ଼ି ନ ଯାଏ, ସେଥିପ୍ରତି ମଧ୍ୟ ଗଭୀର ଦୃଷ୍ଟି ଦିଆଯାଇଥାଏ । ପ୍ରାଣରକ୍ଷଣକ୍ଷମ କୃଷିଜାତ ଦ୍ରବ୍ୟପ୍ରତି ସମ୍ମାନର ତାତ୍ପର୍ଯ୍ୟପୂର୍ଣ୍ଣ ସଙ୍କେତ ଏଥିରେ ଫୁଟିଉଠେ । ଭାତ ଯେଉଁମାନଙ୍କର ପ୍ରଧାନ ଖାଦ୍ୟ, ସେମାନଙ୍କ ପାଇଁ ଅଭଡ଼ାର ଏହି ବ୍ୟଞ୍ଜନା ଅର୍ଥନୈତିକ ଗୌରବ ମଣ୍ଡିତ । ଏପରି କି ହାଣ୍ଡିରେ ଯାହା ରହିଯାଏ, ତାକୁ ଶୁଖାଇ ନିର୍ମାଲ୍ୟ କରି ସେବନ କରିଯାଏ । ଏହି ନିର୍ମାଲ୍ୟ ହିଁ ଆମର କୈବଲ୍ୟ । ପୁଣି କୈବଲ୍ୟର ଅର୍ଥ ମୁକ୍ତି । ମୁକ୍ତି ପାଇଁ ସାଧନା କରିବାକୁ ହେଲେ ମଧ୍ୟ ଜୀବନର ପରିପୂର୍ଣ୍ଣ ସମ୍ଭୋଗ, ଶରୀର ରକ୍ଷା ଏବଂ ପ୍ରବୃତ୍ତିଗୁଡ଼ିକର ଅବଦମନ ବା ସମୁନ୍ନୟନ ଲାଗି ମାନସିକ ବଳର ପରମ ସହାୟକ ଶାରୀରିକ ବଳ ଦରକାର । ଏହି ଦୃଷ୍ଟିରୁ ବିଚାରକଲେ, ଯେଉଁ ଆର୍ଯ୍ୟଋଷି ଅନ୍ନକୁ 'ବ୍ରହ୍ମ' ବୋଲି କହି-ଥିଲେ, ମାନବର ଜୀବନ ଧାରଣ ଲାଗି ସେ କପରି ଏକ ମହାମନ୍ତ୍ରର ଉପଦେଶ ଦେଇଥିଲେ, ତାହା ଭଲ ଭାବରେ ବୁଝିହେବ । ଓଡ଼ିଆ

ଜାତି ଜଗନ୍ନାଥଙ୍କୁ କେନ୍ଦ୍ର କରି ଜାତୀୟ ଜୀବନର ସମସ୍ତ ବିଭାବକୁ ନୀତି ଓ ବିଧିବିଧାନ ସୂତ୍ରରେ ପ୍ରତିଷ୍ଠା କରିଯାଇଥିଲା । ଜଗନ୍ନାଥ ସେବା ମାଧ୍ୟମରେ ବହୁଶ୍ରମଲବ୍ଧ ଏବଂ ଜୀବନଧାରଣର ସମ୍ବଳ ସ୍ୱରୂପ ଅନ୍ନକୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରି ଜାତୀୟ ଅର୍ଥ-ନୀତିର ସୁରକ୍ଷା ଓ ସୁପ୍ରତିଷ୍ଠା ଦିଗରେ କିଭଳି ଆଭିମୁଖ୍ୟ ଗଠନ, ମନୋଭାବ ଗଠନ ତଥା ଚରିତ୍ର-ଗଠନ କରିବାକୁ ହେବ, ତାହା ଯୁଗଯୁଗ ଧରି ଶ୍ରୀମନ୍ଦିରହିଁ ପ୍ରଚାର କରିଆସିଛି । ଆଜିର ଭାରତରେ ମଧ୍ୟ ଏହି ତତ୍ତ୍ୱ, ଏହି ନୀତି, ଏହି ଆଦର୍ଶ ଓ ଏହି ଆଭିମୁଖ୍ୟ କୃଷିତତ୍ତ୍ୱ ତଥା ଅର୍ଥନୈତିକ ଦୃଷ୍ଟିକୋଣରୁ ଏକାନ୍ତ ଧ୍ୟେୟ, ସେ କଥା ଭୁଲି ଯିବାର ନୁହେ ।

ପ୍ରାଚୀନ ଭାରତରେ ଜୀବନର ସମସ୍ତ ଦିଗ ଧର୍ମତତ୍ତ୍ୱର ଭିତ୍ତି ଉପରେ ହିଁ ପ୍ରତିଷ୍ଠିତ ହୋଇଥିଲା । ବହୁ କ୍ଷେତ୍ରରେ ଧର୍ମ-ତତ୍ତ୍ୱର ଭିତ୍ତି ଥିଲା ମନସ୍ତତ୍ତ୍ୱ, ସମାଜ ତତ୍ତ୍ୱ ଓ ଶରୀରତତ୍ତ୍ୱ । ଶ୍ରୀମନ୍ଦିରରେ ଏହି ଆଦର୍ଶ ମୂର୍ତ୍ତିମନ୍ତ ହୋଇ ରହିଛି । କିଏ କହିବ, ଅନ୍ନ-ଲକ୍ଷ୍ମୀଙ୍କ ପ୍ରତି ଏକାନ୍ତ ଉଦାସୀନ ଥିବା ଦେଶବାସୀଙ୍କ ମନରେ ଅନ୍ନପ୍ରତି ସମ୍ମାନ-ଜ୍ଞାନ ଜନ୍ମାଇବା ପାଇଁ ଜଗନ୍ନାଥ ଓ ଅଭଡ଼ା ମାଧ୍ୟମରେ ଜାତୀୟ-ଅର୍ଥନୀତିର ଏକ ମହାମନ୍ତ୍ର ପ୍ରଚାର କରାଯାଇ ନଥିଲା !!



# ଭଞ୍ଜ ସାହିତ୍ୟରେ ଜଗନ୍ନାଥ

ଓଡ଼ିଶାର ସୁନାମଧନ୍ୟ ମହାକବି ଉପେନ୍ଦ୍ର ଭଞ୍ଜ ଜଣେ ଜଗନ୍ନାଥ-ଭକ୍ତ । ଜଗନ୍ନାଥଙ୍କ ପବିତ୍ର ଧାମ ଏବଂ ପ୍ରସିଦ୍ଧ ଲୀଳାବଳୀ ଭଞ୍ଜ ସାହିତ୍ୟରେ ମୂର୍ତ୍ତିମନ୍ତ । ଭଞ୍ଜ 'ପୁରୁଷୋତ୍ତମ ମାହାତ୍ମ୍ୟ' ନାମକ ଏକ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ । ଏହି ନାମରୁ ଜଣା-ଯାଏ, ଶ୍ରୀକ୍ଷେତ୍ର ଦର୍ଶନ ନିମନ୍ତେ ଯେଉଁମାନେ ଆସନ୍ତି, ସେମାନଙ୍କର ସାହାଯ୍ୟ ଲାଗି ଏହା ରଚିତ ହୋଇଥିଲା । ଏହାକୁ ଆଜିକାଲିର ଭାଷାରେ ଏକ "Tourist Hand Book" କୁହାଯାଇପାରେ । ଓଡ଼ିଶାର ପର୍ଯ୍ୟଟନ-ସାହିତ୍ୟ (Tourist Literature)କୁ ଏହି ବହି ଖଣ୍ଡିକ ଉପେନ୍ଦ୍ର ଭଞ୍ଜଙ୍କର ଗୋଟିଏ ଅବଦାନ । ସେ ଯାହା ହେଉ, ଭଞ୍ଜଙ୍କର ବିଭିନ୍ନ ରଚନାରେ ଜଗନ୍ନାଥଙ୍କର ଗୌରବ କପରି ବର୍ଣ୍ଣିତ, ତାହାହିଁ ଏ ପ୍ରସଙ୍ଗରେ ଆଲୋଚନା କରା-ଯାଉଛି ।

## ତିନୋଟି କାବ୍ୟର ଆଲୋଚନା ଆବଶ୍ୟକ—

ଯଦିଓ ବିଭିନ୍ନ କାବ୍ୟରେ ସ୍ଥାନେ ସ୍ଥାନେ ଜଗନ୍ନାଥଙ୍କ ବର୍ଣ୍ଣନା ଅଛି, ତଥାପି 'ବୈଦେହୀଶ ବିଳାସ', 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ଏବଂ 'ରସିକ ହାରାବଳୀ'—ଏହି ତିନି ଖଣ୍ଡି କାବ୍ୟ ସର୍ବାଧିକ ଶାସ୍ତ୍ରୀ । ତେଣୁ ଏଠାରେ ଏହି କାବ୍ୟତ୍ରିତୟର ଆଧାର ଉପରେ ଜଗନ୍ନାଥଙ୍କ ଗୌରବ ପ୍ରତିପାଦନ କରାଯାଉଅଛି ।

## (୧) ବୈଦେହୀଶ ବିଳାସ—

'ବୈଦେହୀଶ ବିଳାସ' ଭଞ୍ଜଙ୍କର ସର୍ବଶ୍ରେଷ୍ଠ ଭକ୍ତି ଗ୍ରନ୍ଥ । ଏହା କେବଳ ରାମ-ସୀତା-ବିଷୟକ କାବ୍ୟ ନୁହେଁ । ବୈଦେହୀ ଅର୍ଥାତ୍ ଜୀବାତ୍ମା ବା ପ୍ରାଣୀ-ସମାଜ । ସେମାନଙ୍କର ଈଶ ବା ପ୍ରଭୁ ଅଟନ୍ତି ସେଉଁ ପରମାତ୍ମା, ସେହି ପରମାତ୍ମାଙ୍କର 'ବିଳାସ' ଅର୍ଥାତ୍ ତତ୍ତ୍ୱ ପ୍ରକାଶ ଏଥିରେ ହୋଇଅଛି । ଏ ଦୃଷ୍ଟିରୁ ଦେଖିଲେ, ଭୌତିକ ଜୀବନ ଓ ଆଧ୍ୟାତ୍ମିକ ଜୀବନ, ଏ ଦୁଇ ଜୀବନ ଲାଗି କବି ଏଥିରେ ଉପାଦାନ ରଖିଯାଇଛନ୍ତି ।

'ବୈଦେହୀଶ ବିଳାସ'ର ପ୍ରଥମ ଛାନ୍ଦର ପ୍ରଥମ ଦୁଇଟି ପଦରେ ମଙ୍ଗଳା ଚରଣ କରାଯାଇଛି । ପରମ୍ପରାରୁ ଜଣାଯାଏ, ବିଭିନ୍ନ ଭକ୍ତ ଜଗନ୍ନାଥଙ୍କୁ ନିଜ ନିଜ ଦୃଷ୍ଟିରୁ ଦେଖି ସେ ଏକ ନିର୍ଦ୍ଦିଷ୍ଟ ଦେବତା ବୋଲି ମତ ପ୍ରକାଶକଲେ । ସ୍ୱାମୀ ଶଙ୍କର-ପନ୍ଥୀମାନେ କହିଲେ, "ଜଗନ୍ନାଥ ହେଉଛନ୍ତି ବିଷ୍ଣୁ ।" ରାମାନୁଜ-ମାନେ କହିଲେ, "ସେ ହେଉଛନ୍ତି ନାରାୟଣ", ନିମ୍ବାର୍କମାନେ କହିଲେ, "ସେ ହେଉଛନ୍ତି ମାଧବ"; ଚୈତନ୍ୟପନ୍ଥୀମାନେ କହିଲେ, "ସେ ହେଉଛନ୍ତି ଶ୍ରୀକୃଷ୍ଣ ।" ଏପରିକି ଶୈବ, ଶାକ୍ତ, ସୌର, ଗାଣପତ୍ୟ ପ୍ରଭୃତି ସମସ୍ତେ କହିଲେ, "ଜଗନ୍ନାଥ ଆମର ଦେବତା ।" କିଏ କେଉଁ ଭଳି ଭାବରେ ଯୁକ୍ତି ଉପସ୍ଥାପନ କରି ନିଜ ନିଜର ମତ ପ୍ରତିଷ୍ଠା କରିବାକୁ ଲାଗିଲେ । ଜଗନ୍ନାଥ ଧାମର କି ଆକର୍ଷଣ ଶକ୍ତି ଅଛି କେଜାଣି, ସମଗ୍ର ହିନ୍ଦୁ-ଭାରତ ଜଗନ୍ନାଥଙ୍କୁ ନିଜର ବୋଲି ଦାବି କଲା । ଭକ୍ତପ୍ରବର, ଓଡ଼ିଆ

ସଂସ୍କୃତିର ପରିପୂର୍ଣ୍ଣ ପ୍ରକାଶ, ମହାକବି ଉପେନ୍ଦ୍ର ଭଞ୍ଜ କହିଲେ, "ବେଶ୍, ଭଲ କଥା, ଆମେ ତ ସେଇ କଥା କହୁଛୁ । ହିନ୍ଦୁ ଜଗତରେ ଯେତେ ଯେତେ ଧାର୍ମିକ ମତ ଓ ତତ୍ତ୍ୱ ରହିଛି, ସେ ସବୁ ଜଗନ୍ନାଥଙ୍କ ଠାରେ ଲୀନ ।" ଅନ୍ୟ ଭାବରେ କହିଲେ, "ବିଭିନ୍ନ ଦେବଦେବୀଙ୍କର ଯାହା ବିଶିଷ୍ଟତା, ବିଶେଷତ୍ୱ ବା ବୈଶିଷ୍ଟ୍ୟ, ସେ ସବୁ ମଧ୍ୟ ଜଗନ୍ନାଥଙ୍କଠାରେ ପୂରି ରହିଛି ।" ଏହା କହି 'ବୈଦେହୀଶ ବିଳାସ' ମୂଳରେ ସେ ଜଗନ୍ନାଥଙ୍କର ସୁଦୀର୍ଘ ବନ୍ଦନା କରିବା ସଙ୍ଗେ ସଙ୍ଗେ ଅନ୍ୟ ଅନେକ ଦେବ-ଦେବୀଙ୍କର ବନ୍ଦନା ମଧ୍ୟ କରିଅଛନ୍ତି । ପ୍ରଶ୍ନ ଉଠିପାରେ, କେତେ-ଜଣ ଦେବଦେବୀଙ୍କର ? ତେବେ, ଠିକ୍ ଭାବରେ ଏହାର ଉତ୍ତର ଦେବା ସମ୍ଭବ ନୁହେ । ଏ ସମ୍ପର୍କରେ ଗୋଟିଏ କଥାର ଉଲ୍ଲେଖ କରାଯାଇପାରେ । ଶୁଣାଯାଏ, ଭଞ୍ଜେ 'ବୈଦେହୀଶ ବିଳାସ' କାବ୍ୟ ଧରି ପୁରୀରେ ପହଞ୍ଚିଲେ । ଓଡ଼ିଶାରାଜା ଦିବ୍ୟସିଂହ ଦେବଙ୍କୁ ଦେଖାକରି କହିଲେ, "ଏହା ଆଗରୁ ମୁଁ ଆଉ ଖଣ୍ଡିଏ କାବ୍ୟ ଧରି ଏଠାକୁ ଆସିଥିଲି । ଏଠାରେ ବଡ଼ ବଡ଼ ସଂସ୍କୃତ ପଣ୍ଡିତମାନେ କହିଲେ, "ମୋର ସେହି କାବ୍ୟ ସଂସ୍କୃତ କାବ୍ୟମାନଙ୍କର ସମକକ୍ଷ ନୁହେ । ମୁଁ ଲଜ୍ଜା ଓ ଅପମାନରେ ଫେରିଗଲି । ମୁଁ ନିଜେ ବଡ଼ କବି ବୋଲି ଦେଖାଇଦେବାକୁ କାବ୍ୟ ଖଣ୍ଡିଏ ଧରି ଗତ ଥର ଏଠାକୁ ଆସିନଥିଲି । ମୁଁ ଏହି ମାଟିରେ ଜନ୍ମ ହେବା ପରେ, ଯେଉଁ ଓଡ଼ିଆ ଭାଷାରେ 'ମା' ବୋଲି ଡାକିଥିଲି, ସେହି ମୋର ମାତୃଭାଷା ମାଧ୍ୟମରେ କାବ୍ୟକବିତା ଲେଖାଯାଇପାରିବ, ଏହି କଥାଟିକୁ ହିଁ ପ୍ରମାଣ କରିବାକୁ ମୁଁ ମୋର କାବ୍ୟ ଖଣ୍ଡିକ ଧରି ଆସିଥିଲି । ଏହି ଗୋଟିକ ଲକ୍ଷ୍ୟ ଗତ ଥର ମତେ ଆପଣଙ୍କ ପାଖକୁ ଆଣିଥିଲା । ଏଥର କିନ୍ତୁ ମୁଁ ଦୁଇଟି ଲକ୍ଷ୍ୟ ନେଇ ଆସିଛି ।

ମୋର ପ୍ରଥମ ଲକ୍ଷ୍ୟ ହେଲ,—"ମୁଁ ଭାରତର ବଡ଼ ବଡ଼ କବି ଓ ପଣ୍ଡିତଙ୍କୁ ଦେଖାଇଦେବି ଯେ, ସଂସ୍କୃତ ଭାଷାରେ ଯେଉଳି ପାଣ୍ଡିତ୍ୟପୂର୍ଣ୍ଣ କାବ୍ୟ ରଚନା କରାଯାଇପାରେ, ଓଡ଼ିଆ ଭାଷାରେ ମଧ୍ୟ ସେଉଳି ପାଣ୍ଡିତ୍ୟପୂର୍ଣ୍ଣ କାବ୍ୟ ରଚନା କରାଯାଇପାରିବ । ତାହା ଛଡ଼ା, ମୋର ଦ୍ୱିତୀୟ ଲକ୍ଷ୍ୟ ହେଉଛି,—ଧର୍ମ ରାଜ୍ୟରେ ଓଡ଼ିଆ ଜାତି କେତେ ଉଦାର ଏବଂ ମାନବିକତା-କ୍ଷେତ୍ରରେ ଓଡ଼ିଆ ଜାତି କେତେ ସମନ୍ୱୟଶୀଳ, ଏକଥା ମଧ୍ୟ ମୁଁ ପଣ୍ଡିତମାନଙ୍କ ମନରେ ପ୍ରତିଭାତ କରାଇଦେବି । ମୁଁ ହାତରେ ଧରିଥିବା ଏହି 'ବୈଦେହୀଶ ବିଳାସ'ରେ ଶାସ୍ତ୍ର-ପାଣ୍ଡିତ୍ୟ ଏବଂ ଜଗନ୍ନାଥ-କେନ୍ଦ୍ରିକ ଧାର୍ମିକ ଉଦାରତା ଏଭଳି ଭାବରେ ସମାବେଶିତ ହୋଇଅଛି ଯେ, ଆସେତୁ-ହିମାଚଳ ଭାରତର ପଣ୍ଡିତ ସମାଜରେ ଏହି କାବ୍ୟ ଆଲୋଡ଼ନ ସୃଷ୍ଟି କରିବ ।"

ସେ ସମୟର ପ୍ରଚଳିତ ବିଧି ଅନୁସାରେ ଏହି ବିଲକ୍ଷଣ ପ୍ରତିଭାଶାଳୀ ତରୁଣ କବି-ପଣ୍ଡିତଙ୍କର ଶକ୍ତି ପରୀକ୍ଷା ପାଇଁ 'ପଣ୍ଡିତ ସଭା ଆହୂତହେଲା । ସେହି ସଭାର ସଭାପତି, ଉତ୍କଳ ଗଜପତିଙ୍କର ନିର୍ଦ୍ଦେଶ କ୍ରମେ ଉପେନ୍ଦ୍ରଭଞ୍ଜ ଗଭୀର ଆତ୍ମ ବିଶ୍ୱାସରେ ଅଥଚ ବିନମ୍ରଭରା କଣ୍ଠରେ ଜଗନ୍ନାଥଙ୍କର ବନ୍ଦନା କରି ଥିବା, 'ପାହାଡ଼ିଆ-କେଦାର' ବୃତ୍ତରେ ଲିଖିତ 'ବୈଦେହୀଶ ବିଳାସ'ର ପ୍ରଥମ ଓ ଦ୍ୱିତୀୟ ପଦ ଆବୃତ୍ତିକଲେ । କହିଲେ, "ମୁଁ ଓଡ଼ିଆ । ମୋ ଦେଶର ବିଶ୍ୱବିଖ୍ୟାତ ଦେବତା ଜଗନ୍ନାଥଙ୍କର ଗୁଣ ଗୌରବ ଗାନ କରିବାକୁ ଯାଇ ମୁଁ ଏ ଦୁଇପଦ ଲେଖିଛି । ଏଥିରେ ଜଗନ୍ନାଥଙ୍କର ବିଭିନ୍ନ ଗୌରବ-ଦ୍ୟୋତକ ପ୍ରାୟ ତିରିଶଗୋଟି ବିଶେଷଣ ମୁଁ ବିନ୍ୟାସ କରିଅଛି ।"

ଏହା କହିସାରି ପ୍ରଥମ ଓ ଦ୍ୱିତୀୟ ପଦ (Stanza)ରେ ଥିବା ପ୍ରାୟ ତିରିଶ ଗୋଟି ଶବ୍ଦ ବିସ୍ତୃତ ଭାବରେ ବ୍ୟାଖ୍ୟାନ କଲେ ।

ତାହା ପରେ ପରେ ପ୍ରଶ୍ନ ହେଲା,—"ଆପଣ ତ ରାମଚନ୍ଦ୍ରଙ୍କ ଚରିତ ଏହି କାବ୍ୟରେ ବର୍ଣ୍ଣନା କରିଅଛନ୍ତି, ରାମଚନ୍ଦ୍ରଙ୍କର ଗୁଣ ଗୌରବ ସମ୍ପର୍କରେ ଆପଣ କିଛି ନ କହିଲେ କାହିଁକି ?" ସଭା ଭିତରୁ ପୁଣି ପ୍ରଶ୍ନ ଉଠିଲା, "ଆମର ଏଇ ଜଗନ୍ନାଥ ହେଉଛନ୍ତି ସ୍ୱୟଂ ପୁରୁଷୋତ୍ତମ-ବିଷ୍ଣୁ । ବିଷ୍ଣୁଙ୍କର ସମ୍ପର୍କରେ ଆପଣ କିଛି ବର୍ଣ୍ଣନା ନ କଲେ କାହିଁକି ? ଇତ୍ୟାଦି ।" ଏହିଭଳି ଭାବରେ ଉପେନ୍ଦ୍ର ଭଞ୍ଜଙ୍କୁ ନାନା ପ୍ରଶ୍ନ ପଚାରି, ପଣ୍ଡିତମାନେ ବିବ୍ରତ କରି-ପକାଇବାକୁ ଚେଷ୍ଟାକଲେ । କିନ୍ତୁ ଜଗନ୍ନାଥଙ୍କ କରୁଣାସିକ୍ତ ଉପେନ୍ଦ୍ର ଭଞ୍ଜ ଏ ପ୍ରଶ୍ନ-ବାଣରେ ଲବମାତ୍ର ବିଚଳିତ ହେଲେ ନାହିଁ । ଖରାଦିନେ, ଖରାବେଳେ, ଦେହରୁ ଗମ୍ ଗମ୍ ଝାଳ ବୋହୁ-ଥିଲା ବେଳେ ଦେହ ଉପରେ ବର୍ଷାଜଳ ଧୀରେ ଧୀରେ ପଡ଼ିଲେ, ଦେହକୁ ଯେତିକି ବାଧେ ବା କଷ୍ଟ ହୁଏ, ପଣ୍ଡିତମାନଙ୍କର ଏହି ବାକ୍ୟ-ବାଣ ଉପେନ୍ଦ୍ରଙ୍କ ମନରେ ତାହାଠାରୁ ବେଶି ଆଘାତ ଦେଇ ନଥିଲା ।

[illegible]

[illegible] ଭଞ୍ଜ କହିଲେ, "ପଣ୍ଡିତ ମଣ୍ଡଳୀ ! ଆପଣମାନଙ୍କର ପ୍ରଶ୍ନ [illegible] ବିଶେଷ ଆନନ୍ଦ ଦେଉଅଛି । ପ୍ରକୃତରେ କହିବାକୁ [illegible], ଜଗନ୍ନାଥଙ୍କ କୃପାରୁ ଆପଣମାନେ ମତେ [illegible] ପ୍ରଶ୍ନମାନ [illegible] କରୁଅଛନ୍ତି । ତେଣୁ ମୁଁ ସେହି ଚଉବାହା ଚକା-ଡୋଳାଙ୍କର ପାଦରେ ଆଶ୍ରୟ ନେଇ, ଆପଣମାନଙ୍କ ପ୍ରଶ୍ନର

ଉତ୍ତରଦେବାକୁ ଯାଉଛୁ । ଟିକଏ ଧୀରସ୍ଥିର ଭାବରେ ଶୁଣନ୍ତୁ ।''

ଏହା ପରେ ଭଞ୍ଜେ କହିଲେ, "ଜଗନ୍ନାଥଙ୍କ ଠାରେ ବିଷ୍ଣୁ ଲୀନ ହୋଇଅଛନ୍ତି । ସୁତରାଂ, ଜଗନ୍ନାଥଙ୍କ ବନ୍ଦନାରେ ମୁଁ ଯେଉଁ ପ୍ରାୟ ତିରିଶଗୋଟି ବିଶେଷଣ ପ୍ରୟୋଗକରିଅଛି. ସେ ସବୁ ମଧ୍ୟ ବିଷ୍ଣୁଙ୍କୁ ବୁଝାଉଛି ।'' ଏହା କହି, 'ବିଷ୍ଣୁ ପୁରାଣ' ଅନୁସାରେ ସେହି ଶବ୍ଦଗୁଡ଼ିକୁ ସେ ଅର୍ଥ କରିଗଲେ । ତାହାପରେ କହିଲେ, "ଜଗନ୍ନାଥଙ୍କ ଠାରେ ମହାଦେବ ଶିବ ଲୀନ ହୋଇଅଛନ୍ତି । ତେଣୁ ସେହି ପ୍ରାୟ ତିରିଶଟି ଯାକ ଶବ୍ଦ ଭିତରେ ମହାଦେବ ଶିବଙ୍କର ଗୁଣ ଗୌରବ ପ୍ରକାଶପାଇଛି ।'' ଏହା କହି, 'ଶିବ ପୁରାଣ' ଅନୁସାରେ ସେହି ପଦଗୁଡ଼ିକୁ ବ୍ୟାଖ୍ୟାନ କରିଗଲେ । ତାହାପରେ କହିଲେ, "ଜଗନ୍ନାଥଙ୍କ ଠାରେ ମା' ଦୁର୍ଗା ମଧ୍ୟ ଲୀନ ହୋଇଅଛନ୍ତି ।'' ଏହା କହି, "ଦେବୀ ଭାଗବତ' ପୁରାଣ ତଥା ଚଣ୍ଡୀ ପୁରାଣ ଅନୁସାରେ ସେ ସବୁ ବିଶେଷଣ ବ୍ୟାଖ୍ୟାନ କରିଗଲେ । ଧନ୍ୟ ପ୍ରତିଭା ! ଧନ୍ୟରେ ଓଡ଼ିଆ ପୁଅ !!!

ଏହି ସବୁ ବ୍ୟାଖ୍ୟାନ ଶୁଣି ପ୍ରଶ୍ନ ପଚାରୁଥିବା ପଣ୍ଡିତମାନେ ଯେଉଁଳି ନତବଦନ ହୋଇଯାଉଥିଲେ, ଜନତା ପକ୍ଷରୁ ସେଉଁଳି ବାରମ୍ବାର ହର୍ଷବୋଳ ଉଚ୍ଛ୍ୱସିତହୋଇ ଗଗନ ବିଦୀର୍ଣ୍ଣ କରିଦେଉଥିଲା ।

ଏଭଳି ଭାବରେ ଭଞ୍ଜେ କୁଆଡ଼େ ଜଗନ୍ନାଥଙ୍କୁ ମିଶାଇ ଦ୍ୱାଦଶ ଦେବଦେବୀଙ୍କ ପକ୍ଷରେ ପ୍ରଥମ ଦୁଇଟି ପଦ ଅର୍ଥ କରି ସମସ୍ତଙ୍କୁ ଆନନ୍ଦରେ ଅଧୀର କରିଦେଇଥିଲେ ।

କିମ୍ବଦନ୍ତୀରୁ ଜଣାଯାଏ, ଉପେନ୍ଦ୍ର ଭଞ୍ଜ ତୀର୍ଥ ଭ୍ରମଣ କରିବାକୁ ଯାଇ ବିଦ୍ୟାନଗରୀ ବାରାଣସୀରେ ଉପସ୍ଥିତ ହୋଇ-ଥିଲେ । ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ଏକଥା ବହୁ ବାର କହିଛନ୍ତି ଓ ଲେଖିଛନ୍ତି ମଧ୍ୟ । ସେଠାରେ ଭଞ୍ଜେ 'ବୈଦେହୀଶ ବିଳାସ'ର ପ୍ରଥମ ଦୁଇଟି ପଦ ବ୍ୟାଖ୍ୟାନ କରି ପଣ୍ଡିତମାନଙ୍କୁ ଚମତ୍କୃତ କରି ଦେଇଥିଲେ । ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିଲାବେଳେ ତାଙ୍କର ପ୍ରେରଣାରେ ଭଞ୍ଜ ସାହିତ୍ୟର ବିସ୍ତୃତ ଓ ସୁଖବୋଧ୍ୟ ଟୀକା କରିବାକୁ ମୁଁ ଉଦ୍ୟତ ହୋଇଥିଲି । ଭଞ୍ଜ ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡ 'ବୈଦେହୀଶ ବିଳାସ' କାବ୍ୟର ଠିକ୍ ଅଧା ବା ଛବିଶ ଗୋଟି ଛାନ୍ଦ)ର ପାଣ୍ଡୁଲିପି ମୁଁ ସରକାରଙ୍କୁ ଦେଇଥିଲି । ଦ୍ୱିତୀୟ ଭାଗର କାର୍ଯ୍ୟ ଶେଷ ପ୍ରାୟ । ସାଂସ୍କୃତିକ ବ୍ୟାପାର ବିଭାଗ ପକ୍ଷରୁ ଗଲା ୩।୪ ବର୍ଷ ଧରି ଏହି ପ୍ରଥମ ଖଣ୍ଡର ମୁଦ୍ରଣ କାର୍ଯ୍ୟ ଚାଲିଛି । ଆଉ କେତେ କାଳ ଲାଗିବ, କହିହେବ ନାହିଁ । ତେବେ, ସରକାର ଏଭଳି ଏକ ଜାତୀୟ ମହାଗ୍ରନ୍ଥ ପ୍ରକାଶକରିବାର ଦାୟିତ୍ୱ ବହନକରି ଧନ୍ୟବାଦାର୍ହ ହୋଇଛନ୍ତି । ତହିଁରେ ମୁଁ ଆଠ ଦେବଦେବୀଙ୍କ ପକ୍ଷରେ ପ୍ରଥମ ଦୁଇ ପଦର ବିସ୍ତୃତ ଅର୍ଥ ବ୍ୟାଖ୍ୟାନ ଦେଇଅଛି । ଏଥିରୁ ଗୋଟିଏ ଅର୍ଥ ହେଉଛି ଜଗନ୍ନାଥଙ୍କ ପକ୍ଷରେ । କାଞ୍ଚୀ ଯୁଦ୍ଧରେ ଜଗନ୍ନାଥ କିପରି ଓଡ଼ିଶା ରାଜାଙ୍କୁ ସାହାଯ୍ୟ କରିଥିଲେ, ନୀଳଗିରି ଉପରେ ସେ କିପରି ଆବିର୍ଭୂତ, ପ୍ରତି ବର୍ଷ ବର୍ଷା-କାଳରେ ସେ କିପରି ଆନନ୍ଦିତ ହୋଇ ରଥ ଉପରେ ବିଜେ କରନ୍ତି, ତାଙ୍କର ଶ୍ରୀକ୍ଷେତ୍ରରେ କିପରି ଛୁଆଁ ଛୁତ ଦୋଷ ନାହିଁ ଇତ୍ୟାଦି ଇତ୍ୟାଦି କଥା ପ୍ରଥମ ପଦର ଅର୍ଥର ବ୍ୟାଖ୍ୟାନରେ ବୁଝାଇଦିଆଯାଇଛି । ସମଗ୍ର ଭାରତୀୟ ଭକ୍ତି ସାହିତ୍ୟରେ ଏଭଳି ଧାର୍ମିକ ଉଦାରତା ଏବଂ ଶାସ୍ତ୍ର ଜ୍ଞାନ ଓ ଶବ୍ଦ ପାଣ୍ଡିତ୍ୟର ଦୃଷ୍ଟାନ୍ତ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।

## (୨) କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ--

'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ଭଞ୍ଜଙ୍କର ପାଣ୍ଡିତ୍ୟ-ବଳସିକ୍ତ-କବି-ପ୍ରତିଭାର ସର୍ବଶ୍ରେଷ୍ଠ ଦୃଷ୍ଟାନ୍ତ । କୁହାଯାଇଛି,—

"ସର୍ବସ୍ୱଂ ଭଞ୍ଜବୀରସ୍ୟ
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।"

ଏହି କାବ୍ୟର ପ୍ରଥମ ଛାନ୍ଦଟିଯାକ ଜଗନ୍ନାଥଙ୍କ ଭକ୍ତିଭରା ବନ୍ଦନରେ ପ୍ରାଣପୂର୍ଣ୍ଣ । ଏହି ଛାନ୍ଦରେ ଜଗନ୍ନାଥ ମହାପ୍ରଭୁଙ୍କର ଦେବସ୍ନାନ ପୂର୍ଣ୍ଣିମା ଉତ୍ସବ ବିସ୍ତୃତ ରୂପେ ବର୍ଣ୍ଣିତ ହୋଇଅଛି । ପୁଣି ରଥଯାତ୍ରାର ମଧ୍ୟ ଉଲ୍ଲେଖ ଅଛି । ଏ ଦୁଇ ଯାତ୍ରାରେ ଜଗନ୍ନାଥ ବଡ଼ ଦେଉଳରୁ ବାହାର ପଦାକୁ ଆସନ୍ତି । ଏହା ମଧ୍ୟ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । କବି ଲେଖିଛନ୍ତି—

"ସ୍ନାନ ଗୁଣ୍ଡିଚ୍ଚ ଏ ବେନି ସ୍ୱୟଂ ଲୀଳା ଯାର
ପତିତ ପାବନ ଅର୍ଥେ ପ୍ରାସାଦୁ ବାହାର ।"

ରଥଯାତ୍ରାର ଅସଲ ଉଦ୍ଦେଶ୍ୟ ହେଉଛି, ସର୍ବସାଧାରଣଙ୍କୁ ଦେଖାଦେବା । ଯେଉଁମାନେ ବିଧର୍ମୀ କିମ୍ବା ଅନ୍ୟଥା ମନ୍ଦିର ପ୍ରବେଶରୁ ବଞ୍ଚିତ, ସେମାନଙ୍କୁ ଦର୍ଶନ ଲାଭର ସୁଯୋଗ ଦେବାହିଁ ଏହି ଯାତ୍ରାର ଉଦ୍ଦେଶ୍ୟ । ଦେବସ୍ନାନ ପୂର୍ଣ୍ଣିମା ଦିନ ମଧ୍ୟ ଜଗନ୍ନାଥ ସ୍ନାନ ବେଦୀ ଉପରକୁ ଯାଆନ୍ତି । ବେଦୀକୁ ଯିବାବେଳେ କବି ବଳଭଦ୍ରଙ୍କୁ ଐରାବତ ହାତୀରୂପେ କଳ୍ପନା କରିଛନ୍ତି । କେହି ଜଣେ ଯଦି କବିଙ୍କୁ କହନ୍ତା "ହଇ ହେ ଭଞ୍ଜେ, ଆମ ଜଗନ୍ନାଥ

ମହାପ୍ରଭୁଙ୍କ ବଡଭାଇଙ୍କୁ ଐରାବତ ହାତୀ ବୋଲି ତୁମେ ବର୍ଣ୍ଣନା କଲ କାହିଁକି ?" ଭଞ୍ଜେ ଉତ୍ତରଦେଉଅଛନ୍ତେ—କହିଲ, ଆମ ଜଗନ୍ନାଥ ମହାପ୍ରଭୁ ଏକ ସମୟରେ ବାମନ ହୋଇଥିଲେ; ଅର୍ଥାତ୍ ବାମନ ଅବତାର ଗ୍ରହଣକରିଥିଲେ । (ଆଉ, ଆମ ପୁରାଣ-ବର୍ଣ୍ଣିତ ଆଠ ଦିଗର ଆଠଟି ହାତୀ ଭିତରୁ ଦକ୍ଷିଣ ଦିଗର ହାତୀଟିର ନାମ ହେଉଛି ବାମନ) । ଶବ୍ଦାଳଙ୍କାର ଦୃଷ୍ଟିରୁ ଦେଖିଲେ ବାମନ— ଜଗନ୍ନାଥ ମଧ୍ୟ ଗୋଟିଏ ଗୁଣ୍ଡୁଣି ହାତୀ ! ତେଣୁ, ମୁଁ କବି ଉପେନ୍ଦ୍ର ଭଞ୍ଜ ଭାବିଲି, ସାନ ଭାଇ ଯଦି ଗୋଟିଏ ହାତୀ ହେଲା, ବଡ଼ ଭାଇ କ'ଣ ଗୋଟିଏ ଘୋଡ଼ା ନା ବାଘ ହେବ ? ସେଥିପାଇଁ, ବଡ଼ ଭାଇଙ୍କୁ ସବୁଠାରୁ ବଡ଼ ହାତୀ, ଐରାବତ ହାତୀ ରୂପେ ମୁଁ କଳ୍ପନା କଲି ।"

"ଉପେନ୍ଦ୍ର ଭଞ୍ଜ ପୁଣି ଲେଖିଛନ୍ତି—

ଦଶ ଅବତାର ଲୀଳା ଯାହା ବିରଚନ
ଜନକୁ ଦେଖାନ୍ତି ଅବତାର କଥାମାନ ।"

ଜଗନ୍ନାଥ ମହାପ୍ରଭୁ ଓଡ଼ିଆଙ୍କ ମତରେ ସର୍ବଶ୍ରେଷ୍ଠ ଦେବତା । ସେ ଅବତାର ବିଖ୍ୟାତ ଦଶ ଅବତାର ଯେ ଗ୍ରହଣ କରିଥିଲେ, ସେ ହେଉଛନ୍ତି ଆମର ଏହି ଜଗନ୍ନାଥ । ଓଡ଼ିଶାର ବିଶ୍ୱବିଖ୍ୟାତ ସଂସ୍କୃତ କବି ଜୟଦେବ ଗୀତଗୋବିନ୍ଦ କାବ୍ୟ ମୂଳରେ 'ଜଗଦୀଶ' ଶବ୍ଦ ପ୍ରୟୋଗ କରିଅଛନ୍ତି । ଯଥା—"ଜୟ ଜଗଦୀଶ ହରେ ।" ଏଠାରେ 'ଜଗଦୀଶ ଶବ୍ଦ ବଡ଼ ଗୁରୁତ୍ୱପୂର୍ଣ୍ଣ । ଜଗତ୍ ଏବଂ ଈଷ, ଏ ଦୁଇଟି ଶବ୍ଦ ମିଶି ଜଗଦୀଶ ହୋଇଅଛି ।, ଈଷ ଶବ୍ଦର ଅର୍ଥ ନାଥ, ପ୍ରଭୁ । ସୁତରାଂ, ଜଗଦୀଶ ଏବଂ ଜଗନ୍ନାଥ ଗୋଟିଏ ଶବ୍ଦ

କହିଲେ ଚଳେ—କେବଳ ଭାଷା-ବ୍ୟବହାରରେ ଦୁଇଟି ଶବ୍ଦ ହୋଇ ଉଭୟେ ଆମର ଏହି ଜଗନ୍ନାଥଙ୍କୁ ବୁଝାଉଛନ୍ତି । କବି ଜୟଦେବ ଏହି ଜଗଦୀଶ ବା ଜଗନ୍ନାଥଙ୍କୁ ଦଶାକୃତି କୃତ ବା ଦଶ ଅବତାର-ଧାରୀରୂପେ ବର୍ଣ୍ଣନା କରିଛନ୍ତି । ଜୟଦେବଙ୍କର ଏହି ଗୌରବାବହ ଇଙ୍ଗିତରେ ଗୃହୀତହୋଇ ଭଞ୍ଜେ ଜଗନ୍ନାଥଙ୍କର ଦଶାବତାର ଲୀଳାକଥା କହିଅଛନ୍ତି । ଓଡ଼ିଶାର ଜାତୀୟ ଇତିହାସରେ ଏବଂ ଧର୍ମର ଇତିହାସରେ ଏହି ବ୍ୟଞ୍ଜନା ଭୁଲିବାର ନୁହେ ।

'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଶ୍ରୀକ୍ଷେତ୍ରର ଗୌରବ ଉଦ୍-ଘୋଷିତ । ପୁରାଣମାନଙ୍କରୁ ନାନା ତଥ୍ୟ ସଂଗୃହୀତ ହୋଇ ଏଥିରେ ସନ୍ନିବେଶିତ । ଭାରତରେ ଅନେକ ପୁଣ୍ୟକ୍ଷେତ୍ର ଅଛି ସତ, ତଥାପି ଜଗନ୍ନାଥଙ୍କ କ୍ଷେତ୍ର ହେଉଛି ସର୍ବଶ୍ରେଷ୍ଠ । କବିଙ୍କ ଭାଷାରେ—

"ଅନ୍ୟ କ୍ଷେତ୍ର ସମସ୍ତଙ୍କ ଏ ମସ୍ତକ ମଣି"

ଜନ୍ମଭୂମି ଉତ୍କଳର ଗୌରବ-ବର୍ଦ୍ଧନ ଲାଗି କବିଙ୍କର ଚେଷ୍ଟା ଏଥିରେ ସ୍ପଷ୍ଟ । ଉପେନ୍ଦ୍ର ଭଞ୍ଜ ଓଡ଼ିଶାର ଧାର୍ମିକ ଉତ୍କର୍ଷକୁ ପୂର୍ବ ପ୍ରତିଷ୍ଠିତ ତଥ୍ୟ ବଳରେ ଯେପରି ପ୍ରତିପାଦନ କରିଛନ୍ତି, ଓଡ଼ିଆ ଭାଷା ଓ ସାହିତ୍ୟର ସର୍ବ ଭାରତୀୟ ତୁଙ୍ଗ ସାହିତ୍ୟକ ସମକକ୍ଷତା ପ୍ରତିପାଦନ ପାଇଁ ସେତିକି ସାର୍ଥକ ପ୍ରୟାସ କରି-ଅଛନ୍ତି ।

## (୩) ରସିକ ହାରାବଳୀ—

'ରସିକ ହାରାବଳୀ'ର ମଙ୍ଗଳାଚରଣରେ ଜଗନ୍ନାଥ-ବନ୍ଦନା ଦେଖାଯାଏ । କବି ଲେଖିଛନ୍ତି—

"ଜୟ ଜୟ ଜଗନ୍ନାଥ ଦାରୁରୂପଧାରୀ,
ନୀଳ ଗିରୀଶ ଗିରୀଶ ବନ୍ଦନୀୟ ହରି ।

ମହାବର୍ଣ୍ଣ ବଳ ଅବରଜ ଭଦ୍ରାଗଜ,
ଗରୁଡ଼ାସନ ସନକ ପୂଜ୍ୟ ଚତୁର୍ଭୁଜ ।

ନୀରଜ ସୁନ୍ଦର ଦର ହର ହରିଷଦ,
ଶମନ ମନରେ ଜାତ କରେ ମହା ଖେଦ ।"

କିନ୍ତୁ ଏହି ବର୍ଣ୍ଣନା ଅପେକ୍ଷା '~~ଲୌକିକ ଭାବାବଳୀ~~ ପ୍ରେମ ସୁଧାନିଧି'ର ତୃତୀୟ ଛାନ୍ଦର ବର୍ଣ୍ଣନା ଆହୁରି ବିଚକ୍ଷଣ । ତହିଁରେ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା ସହିତ ଚନ୍ଦନ ଯାତ୍ରାର ଏକ ମନୋରମ ଚିତ୍ର କବି ଉପସ୍ଥାପନ କରିଅଛନ୍ତି । ଓଡ଼ିଶାର ପୁରପଲ୍ଲୀରେ ଏହି ବର୍ଣ୍ଣନା ଛାନ୍ଦାର୍ଥୀ ଏବଂ ନୃତ୍ୟ ଅନୁଷ୍ଠାନମାନଙ୍କ ଦ୍ୱାରା ପରିବେଷିତହୋଇ ବିପୁଳ ଅଭ୍ୟର୍ଥନା ଲଭ କରିଆସିଛି । ଶ୍ରୀକ୍ଷେତ୍ରର ଗୌରବ ପ୍ରତିପାଦନକରି କବି ଲେଖିଛନ୍ତି—

"ଯେବଣେ କଟକେ ଛଟକେ ବରାଟକେ ମୁକତି
ମହାପ୍ରସାଦରେ ସାଦରେ ଲୋକମାନେ ଲଭନ୍ତି ।

ଅଳପ କଳପ ବଟର ଯହିଁ ଛାୟା ଆଶ୍ରିତ
କଳପ କଳପ ନରକନ୍ଦର ତରନ୍ତି ମତ ।

ପତାକା ଅଞ୍ଚଳ ଚଞ୍ଚଳ ଡାକେ ପାପୀଙ୍କୁ ଅବା
ଏ ନୀଳ ନଗ-ନଗରକୁ ଆସ ଭଲ କରିବା ।

ଦୀନ ବାନ୍ଧବ ମାଧବର ତହିଁ ମାଧବ ମାସେ
ନୃପତି ନନ୍ଦନ ଚନ୍ଦନ ଯାହା ଦେଖେ ହରଷେ ।"

ଚନ୍ଦନ ଯାତ୍ରାର ସୂଚନା ଦେବା ପରେ କବି ନରେନ୍ଦ୍ର ପୁଷ୍କରିଣୀ ଏବଂ ସେଠାରେ ଅନୁଷ୍ଠିତ ଯାତ୍ରାର ବିସ୍ତୃତ ବର୍ଣ୍ଣନା କରିଛନ୍ତି । ମନେ ହେଉଛି, କୌଣସି ପର୍ଯ୍ୟଟକ କିମ୍ବା ତୀର୍ଥଯାତ୍ରୀଙ୍କୁ ଯେପରି କ ପୁଷ୍କର କୌଣସି ପଣ୍ଡା କିମ୍ବା Tourist Guide ଆଙ୍ଗୁଠି ଦେଖାଇ ଯାତ୍ରାର ବିଭିନ୍ନ ଅଂଶ ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କରୁଅଛନ୍ତି । କବିଙ୍କ ଭାଷାରେ—

"ନରେନ୍ଦ୍ର ତଡ଼ାଗେ କଶାନ୍ଦ୍ର    ସୁରେନ୍ଦ୍ର ପରିହରି
ନାବରେ ଭାବରେ ବିଜୟ    କରି ସୁଖେ ବିହରି ।

ପଛେ ରହି ସ୍ୱଚ୍ଛ ବଡ଼ହି    ପୁଚ୍ଛେ ଦ୍ୱିଜେ ସେବନ୍ତି
ଚାଞ୍ଚନ ବ୍ୟଜନ ସଜ୍ଜନ    କରେ ଧରି ବିଞ୍ଚନ୍ତି ।

• ଫସାର ହାର ଘନ ସାର    ପିଚକା କେ ମାରଇ
କ୍ଷୀର ନଦୀ ଧୀର ଲହରି    ପରି ଗୃମର ଶୋହି ।

ପ୍ରବଳ ଶୋଭନ ଧବଳ    ଛତ୍ର ବହ୍ନି ନୋହଇ
ବଳରେ କବଳ ଧବଳ    କରି ଶୋଭା କରଇ ।

ନୀରଜ ମୁଖୀଙ୍କ ଭରଜ    ହେମ ରଜରେ ଭୂଷି
ଦର୍ଶନ ଲୋଭରେ ନିର୍ଭର    କଲେ ଯୋଗୀ ସନ୍ନ୍ୟାସୀ ।

ଏହାଙ୍କ ବିଭୂତି ତାହାଙ୍କ    ଅଙ୍ଗେ ଅଙ୍କିତ ହୋଇ
ତନୁ ପୁଲକିତ ଶଙ୍କିତ    ନୋହେ କୈତବ ତହିଁ ।

କପଟ ଦର୍ଶନ ଲମ୍ପଟ    ବିଟ ଘାତକ ଗୃହୀ
ଯେ ସୁଧୀ ସଧୀରେ ବୋଲନ୍ତି    କ୍ଷେତ୍ର ବରଟି ଏହି ।"

ଜନତାର ଗହଳ ମଧ୍ୟରେ, କପଟ ଲମ୍ପଟୀ ତଥା ସାଧୁ ସନ୍ନ୍ୟାସୀମାନଙ୍କର ସମ୍ମେଳନ ମଧ୍ୟରେ, ଆଧ୍ୟାତ୍ମିକ ଚର୍ଚ୍ଚାର

ମଧ୍ଧ ଅଭାବ ନାହିଁ । ସେହି କଥା ଫୁଟାଇବାକୁ ଯାଇ କବି ଲେଖି-
ଅଛନ୍ତି—

"ବଧୂର ଚରିତ ମଧୁର କରି ଗାଆନ୍ତି ସାଧୁ
ଆଗତ ହୋଇଣ ନାଚନ୍ତି ଯହିଁ ଗଣିକା ବଧୂ ।

ଗୋପୀ ଗୋପୀନାଥ ସୁବେଶ ସବୁ ଆବେଶ ନୃତ୍ୟେ
ଅତି ବିଦଗ୍ଧ ମାଧବ ତୋଷେ ଭକ୍ତ କବିତ୍ୱେ ।

ହରି ହରି ଧ୍ୱନି ଭରିତେ ଶୁଭେ ଅନବରତେ
ଦଣ୍ଡଧର ଦଣ୍ଡ ଖଣ୍ଡନ କରେ ଦଣ୍ଡକ ମାତ୍ରେ ।

ବାତାୟନ ପାଶେ ନୟନ ଦେଇ ନକଟେ ଗୃହିଁ
ସଲ୍ଲୀଳ ସଲଳ ଭ୍ରମଣ ଜଗବନ୍ଧୁର ତହିଁ ।

ଭଞ୍ଜ ସାହିତ୍ୟରେ ରଥଯାତ୍ରାର ବର୍ଣ୍ଣନା ଅନେକ ସ୍ଥଳରେ ସୂଚିତ ହୋଇଅଛି । ତାଙ୍କର ସମସାମୟିକ କବି ଘନକୃଷ୍ଣ ଦାସ 'ଜଗମୋହନ ଛାନ୍ଦ' ଲେଖିଥିଲେ । ତହିଁରେ ରଥଯାତ୍ରାର ବିସ୍ତୃତ, ମନୋଜ୍ଞ ଏବଂ ଛବିଳ ବର୍ଣ୍ଣନା ଦେଖିବାକୁ ମିଳେ । ମନେହୁଏ, ଉପେନ୍ଦ୍ର ଭଞ୍ଜଙ୍କର କୌଣସି କାବ୍ୟରେ ଏହି ଜାତୀୟ ମହୋତ୍ସବ ରଥଯାତ୍ରାର ବିସ୍ତୃତ ବର୍ଣ୍ଣନା ଅବଶ୍ୟ ଥିବ, ଯେପରି କି 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ସ୍ନାନ ପୂର୍ଣ୍ଣିମାର ଏବଂ 'ରସିକ ହାରାବଳୀ'ରେ ଚନ୍ଦନ ଯାତ୍ରାର ବର୍ଣ୍ଣନା ଅଛି । କିନ୍ତୁ ଭଞ୍ଜଙ୍କର ଅନେକ ବହି ଏ ପର୍ଯ୍ୟନ୍ତ ଅପ୍ରକାଶିତ । ଶୁଣାଯାଏ, ଶହେ ଛାନ୍ଦରେ 'ସ' ଅକ୍ଷର ନିୟମରେ ଭଞ୍ଜ 'ସପ୍ତଶ ବିଳାସ' କାବ୍ୟ ଲେଖିଥିଲେ । ସେହିପରି 'ଦ' ନିୟମରେ 'ଦମୟନ୍ତୀଶ ବିଳାସ' ଲେଖିଥିବାର କେହି କେହି

କହନ୍ତି । ଏହାଛଡ଼ା ଆଉ ଅନେକ କାବ୍ୟ ଲୋକଲୋଚନକୁ ଆସି ନାହିଁ । ତେବେ, କବି ଯେ ଜଗନ୍ନାଥଙ୍କର ଶରଣାପନ୍ନ ଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ । କବି 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ସ୍ପଷ୍ଟ ଲେଖିଅଛନ୍ତି—

"କବି ଉପେନ୍ଦ୍ର, ତବ କୃପାରେ ହୋଇଛୁ
ଏଥେ ମନୋରଥ ସାର୍ଥେ କି ସଂଶୟ ଅଛୁ ।"

ସୁତରାଂ, ଜଗନ୍ନାଥ ମନ୍ଦିରର ଏବଂ ଶ୍ରୀକ୍ଷେତ୍ରର ଗୌରବ ଗାଥା ତଥା ଚରିତ ଚର୍ଚ୍ଚା ପ୍ରସଙ୍ଗରେ ପ୍ରାୟ ତିନି ଶହ ବର୍ଷ ତଳର ଜଣେ କବି ଏ ସବୁ ଯାହା ଲେଖିଯାଇଛନ୍ତି, ତାକୁ ବିଚାରକୁ ନ ନେଲେ ବିଷୟ ପ୍ରତି ଅବିଚାର ହେବାର ଆଶଙ୍କା କରାଯାଏ ।

ଉପେନ୍ଦ୍ର ଭଞ୍ଜ 'ସୁଭଦ୍ରା ପରିଣୟ'ର ମୂଳରେ ମଧ୍ୟ ଶ୍ରୀକ୍ଷେତ୍ର ଏବଂ ଜଗନ୍ନାଥଙ୍କର ଗୌରବ କୀର୍ତ୍ତନ କରିଅଛନ୍ତି । ମାତ୍ର ତାହା 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ବର୍ଣ୍ଣନା ପରି ଏତେ ବିସ୍ତୃତ ନୁହେ । ତେବେ, ଗୁଣ୍ଡିଚା ଯାତ୍ରା ଏହି ମହାକବିଙ୍କ ମନକୁ ଗଭୀର ଭାବେ ପ୍ରଭାବିତ କରିଥିଲା । ଓଡ଼ିଶାରେ ଦୁଇଟି ଗୁଣ୍ଡିଚା ଯାତ୍ରା ହୁଏ—ଗୋଟିଏ ବସନ୍ତ ଗୁଣ୍ଡିଚା ଏବଂ ଅନ୍ୟଟି ବର୍ଷା-ଗୁଣ୍ଡିଚା । ଭୁବନେଶ୍ୱରର ସୁପ୍ରସିଦ୍ଧ ଅଶୋକାଷ୍ଟମୀ ଯାତ୍ରା ହେଉଛି, ବସନ୍ତ-ଗୁଣ୍ଡିଚା । ପୁଣି, ଜଗନ୍ନାଥ ମହାପ୍ରଭୁଙ୍କର ରଥଯାତ୍ରା ହେଉଛି ବର୍ଷା-ଗୁଣ୍ଡିଚା । କବି 'ବୈଦେହୀଶ ବିଳାସ' ମହା-କାବ୍ୟରେ ଏ ଦୁଇ ଗୁଣ୍ଡିଚାର ଉଲ୍ଲେଖ କରିଅଛନ୍ତି ।

ରାମ ଏବଂ ସୀତା ରଥରେ ବସି ଯେତେବେଳେ ବନ ଗମନକଲେ, କବିଙ୍କୁ ଜଣାଗଲା, ଯେପରି କି ଭୁବନେଶ୍ୱରର ହରପାର୍ବତୀ ରଥରେ ବସି ଯାଉଛନ୍ତି ଏବଂ ରାମଙ୍କର ଅନୁଗାମୀ ଅଯୋଧ୍ୟାବାସୀମାନଙ୍କ ପରି ହଜାର ହଜାର ଯାତ୍ରୀ ରଥ ପଛରେ ଗୋଡ଼ାଇଛନ୍ତି । କବିଙ୍କର ଭାଷାରେ--

"ବାହୁଡ଼ ନଗରକୁ ବୋଲୁ ନ ଶୁଣିଲେ
ବେଢ଼ି ଗତି ଅତି ଭରି,
ବସ ଗୁଣ୍ଡିଚ୍ଚ ଏକାମ୍ର ବନେ କି
ଯାତ୍ରୀ ଅନୁଗତ ପରି ।
ବଧୂ ଚୂଡ଼ ଗଉରୀ
ବିଭ୍ରତକ ସୀତା ରାମ ଧରି ।" (୧୭ଶ ଛାନ୍ଦ)

ଏହି କଳ୍ପନା-ବିଳାସ ମଧ୍ୟରେ ଓଡ଼ିଆ ଜାତିର ଏବଂ ଜଗନ୍ନାଥ ଧର୍ମର ମହାନ୍ ଦାର୍ଶନିକ ତତ୍ତ୍ୱ ପ୍ରକାଶପାଇଅଛି । ଓଡ଼ିଶାରେ ଜଗନ୍ନାଥ ଧର୍ମର ଉଦାରତା ଲୋକଙ୍କୁ ଏଭଳି ମୁକ୍ତ-ମନା କରିଦେଇଛି ଯେ, ଲକ୍ଷ୍ମୀ-ନାରାୟଣ ଏବଂ ହର-ପାର୍ବତୀଙ୍କ ମଧ୍ୟରେ ସେମାନେ ବିଭେଦର ପ୍ରାଚୀର ଠିଆକରାଇବାକୁ ପ୍ରସ୍ତୁତ ନୁହନ୍ତି । ଶୈବଧର୍ମ ଏବଂ ବୈଷ୍ଣବ ଧର୍ମର ଦୃଢ଼ ଅନୁଗାମିତା ଫଳରେ ଧାର୍ମିକ ଭାରତ ବହୁ ଅଞ୍ଚଳରେ ଏବଂ ବହୁ ବାର ଏ ଉଭୟ ମତର ମତାନ୍ତର ତଥା ମନାନ୍ତର ମଧ୍ୟ ଅନୁଭବ କରିଅଛି । କିନ୍ତୁ ଓଡ଼ିଆଙ୍କ ମତରେ ଏ ଉଭୟ ଶ୍ରେଣୀର ଦେବତା ବସ୍ତୁତଃ ଏକ ଓ ଅଭିନ୍ନ । ଅତଏବ ଧର୍ମରାଜ୍ୟରେ ଏ ଭଳି ସଂକୀର୍ଣ୍ଣତାର ସ୍ଥାନ ନାହିଁ । ଏହି ମହାନ୍ ଆଦର୍ଶ ଜଗନ୍ନାଥ ଦେଶର ଲୋକେ ପ୍ରଚାର କରିଆସିଅଛନ୍ତି । ଓଡ଼ିଆ ସଂସ୍କୃତିର ଅନବଦ୍ୟ ପରିପ୍ରକାଶ

ଆମର ଏହି କବି ଉପେନ୍ଦ୍ର ଭଞ୍ଜ ଅଯୋଧାରେ ରାମ-ସୀତାଙ୍କୁ ଭୁବନେଶ୍ୱରର ରଥାରୂଢ଼ ହର-ପାର୍ବତୀ ରୂପେ ଚିତ୍ରିକରି ଧାର୍ମିକ ଔଦାର୍ଯ୍ୟର ପବିତ୍ର-ଚତ୍ୱର ତଳେ ଦଣ୍ଡାୟମାନ ହେବାପାଇଁ ଭାରତବାସୀଙ୍କୁ ଆହ୍ୱାନ ଜଣାଇଛନ୍ତି ।

କବି 'ବୈଦେହୀଶ ବିଳାସ'ର ଅଣଚାଶ ଛାନ୍ଦରେ ନନ୍ଦି-ଘୋଷ ରଥର ବର୍ଣ୍ଣନାକରିବା ସଙ୍ଗେ ସଙ୍ଗେ ରଥ ଚିତ୍ର ସହିତ ରଥବନ୍ଧର କବିତା ମଧ୍ୟ ସମାବେଶିତ କରିଛନ୍ତି ।

ଏହି ରଥବନ୍ଧରେ ସେ ନିଜର ପାଞ୍ଚୋଟି ଭାଷା ଜ୍ଞାନ ଦେଖାଇଛନ୍ତି । ଯଥା ସଂସ୍କୃତ, ହିନ୍ଦି, ତେଲୁଗୁ, ମରହଟ୍ଟା ଏବଂ ବଙ୍ଗ । ଏହି ପାଞ୍ଚ ଭାଷାରେ କବିଙ୍କର ଗଭୀର ପାଣ୍ଡିତ୍ୟ ଥିବା ତାଙ୍କ ଜୀବନବୃତ୍ତାନ୍ତରୁ ଜଣାଯାଏ । ଜଗନ୍ନାଥଙ୍କର ନନ୍ଦିଘୋଷ ଓଡ଼ିଆଙ୍କର ରଥ ନୁହେ—ସେ ହେଉଛି ସମଗ୍ର ଭାରତର ତଥା ସମଗ୍ର ହିନ୍ଦୁ ଜଗତର ରଥ । ସେଥିପାଇଁ ସମଗ୍ର ଭାରତର ପ୍ରତି-ନିଧିତ୍ୱ କରିବା ଲକ୍ଷ୍ୟରେ ସଂସ୍କୃତ ଭାଷା, ପୂର୍ବ ଭାରତରେ ପ୍ରତି-ନିଧି ରୂପେ ବଙ୍ଗ ଭାଷା, ଦକ୍ଷିଣ ଭାରତର ପ୍ରତିନିଧି ରୂପେ ତେଲଗୁ ଭାଷା, ଉତ୍ତର ଭାରତ ପାଇଁ ହିନ୍ଦି ଭାଷା, ଉତ୍ତର-ପଶ୍ଚିମ ତଥା ପଶ୍ଚିମ ପାଇଁ ମରହଟ୍ଟା ଭାଷାର ପ୍ରୟୋଗ କଳ୍ପନା କରା-ଯାଇଛି । ଏଠାରେ ଭାଷାଗୁଡ଼ିକ କେବଳ ଲକ୍ଷ୍ୟ ନୁହନ୍ତି, ସେମାନେ ଉପଲକ୍ଷ୍ୟ ମଧ୍ୟ, ଅର୍ଥାତ୍ ଦକ୍ଷିଣ ଭାରତରେ ଦ୍ରାବିଡ଼ ଭାଷା ଗୋଷ୍ଠୀର ଅନେକ ଭାଷା ଥିଲେ ମଧ୍ୟ ସେ ସମସ୍ତଙ୍କୁ ବୁଝାଇବା ଅର୍ଥରେ ସେମାନଙ୍କ ଭିତରୁ ଗୋଟିକର (ତେଲୁଗୁ ଭାଷାର) ନାମ ଉଲ୍ଲେଖ କରାଯାଇଛି । ଅବଶ୍ୟ' ମୁଖ୍ୟତଃ ଜଗନ୍ନାଥଙ୍କ ନନ୍ଦିଘୋଷ

ରଥ ଏ ସ୍ଥଳରେ କବି ବର୍ଣ୍ଣନା କରି ନାହାନ୍ତି । କିନ୍ତୁ, ନନ୍ଦିଘୋଷ ରଥର ଯାତ୍ରା ଯେଉଁ ଦେଶର ସର୍ବଶ୍ରେଷ୍ଠ ଜାତୀୟ ପର୍ବ, ସେ ଦେଶର ମହାକବି ରଥବନ୍ଧ ସହିତ ନନ୍ଦିଘୋଷର ବର୍ଣ୍ଣନା କଲା-ବେଳେ ଜଗନ୍ନାଥଙ୍କ ରଥହିଁ ତାଙ୍କୁ ଭକ୍ତି-ପୁଲକିତ କରିଥିବ, ଏହି ସାର୍ଥକ ଅନୁମାନରୁ ହିଁ ଏଭଳି ବ୍ୟାଖ୍ୟାନ ଏଠାରେ ପ୍ରଦାନ କରାଯାଇଅଛି ।

କିନ୍ତୁ ଜଗନ୍ନାଥଙ୍କର ରଥର ଚିତ୍ର କବିଙ୍କର ମନ-ଜଗତରେ ଯେପରି କି ଚିର ଚଞ୍ଚଳ ଥିଲା ସେଥିପାଇଁ ରାମ-ରାବଣ ଯୁଦ୍ଧର ଚିତ୍ର ଅଙ୍କନ କରିସାରିବା ପରେ କବି ସୀତା-ରାମଙ୍କୁ ଲଙ୍କାରୁ ଫେରାଇ ଆଣିଛନ୍ତି । ପୁଷ୍ପକ ଯାନ ସୀତା-ରାମଙ୍କୁ ନେଇ ଅଯୋଧ୍ୟାକୁ ଫେରିଆସିଛି । ରାମଚନ୍ଦ୍ର ପୁଷ୍ପକ ଯାନରୁ ଅବତରଣ କରିବାପରେ ଉପସ୍ଥିତ ବିରାଟ ଜନତା ତାଙ୍କୁ ଅଭିନନ୍ଦନ ଜଣାଉଛନ୍ତି ।

ସେ ପ୍ରସଙ୍ଗରେ କବି ଲେଖିଅଛନ୍ତି :—

"ବଡ଼ ଦେଉଳ ଅଗ୍ରତରେ ଗୁଣ୍ଡିଚି<br>ରଥ ଯେ ଦେଖିଛି ତରିକ<br>ବିଲୋକନେ ବିଳାସି ସର୍ବ ଲୋକ<br>ବିଧିକି ନରେଶେ ଉତ୍ସବି ସେଠାରେ<br>ଏ ନବ ବିନ ସଂଖ୍ୟକ ହେ, ବିଦୁଷେ"<br>ଏହାର ଅର୍ଥ

"ହେ ସମବେତ ଜନମଣ୍ଡଳୀ ! ଯେଉଁମାନେ ପୁରୁଷୋତ୍ତମ କ୍ଷେତ୍ରରେ ବଡ଼ ଦେଉଳ ଆଗରେ ଗୁଣ୍ଡିଚି ଓ ବାହୁଡ଼ା ଯାତ୍ରା

ଦର୍ଶନ କରିଥିବେ, ସେହିମାନେ ଅନୁମାନ କରନ୍ତୁ, ରାମଚନ୍ଦ୍ରଙ୍କ ଫେରିଆସିବା ସମୟ ଠିକ୍ ବାହୁଡ଼ା ଯାତ୍ରାର ସମାନ ହୋଇ-ଅଛି । ବାହୁଡ଼ା ରଥକୁ ଦେଖିବା ନିମିତ୍ତ ଲୋକମାନେ ଯେପରି ଆଗ୍ରହୀ ହୁଅନ୍ତି, ସେଠାରେ ସେହିପରି ରାମଚନ୍ଦ୍ରଙ୍କୁ ଦେଖିବା ପାଇଁ ସମସ୍ତେ ଅଭିଳାଷୀ ହୋଇଅଛନ୍ତି । ଉକ୍ତ ଗୁଣ୍ଡିଚା ରଥଯାତ୍ରା ନବ ଦିନ ସଂଖ୍ୟାରେ ହୁଏ । ଏହିଠାରେ ସେହିପରି ଏହି ଦିନକୁ 'ନବଦିନ' ବୋଲାଯିବ । (ରାଧାରମଣ ପୁସ୍ତକାଳୟ ସଂସ୍କରଣ-ଟୀକା-୫୧ ଛାନ୍ଦ, ୩୩ ପଦ ।)

ଏହିପରି ଭାବରେ ଖୋଜିବସିଲେ ଶ୍ରୀମନ୍ଦିର, ଶ୍ରୀକ୍ଷେତ୍ର ଏବଂ ରଥଯାତ୍ରା ଭିତରେ ଅନେକ ଚିତ୍ର ଭଞ୍ଜ ସାହିତ୍ୟ ସମୀକ୍ଷକଙ୍କ ଦୃଷ୍ଟିକୁ ଆସିବା ସ୍ୱାଭାବିକ । ବାସ୍ତବରେ, ମହା ମନ୍ଦିରର ମହାନ ଦେବତା ଜଗନ୍ନାଥ ମହା କବିଙ୍କ ଉତ୍କଳ ଦେଶର ମହାକବିଙ୍କ ଲେଖାରେ ମହିମାନ୍ୱିତ ହୋଇଉଠିଛନ୍ତି ।

—*—

# ଓଡ଼ିଶାର ଗଣଧର୍ମ

ଓଡ଼ିଶାର ଗଣଧର୍ମ—ଧାର୍ମିକ ଆଲୋଚନାର ଏ ଅଭିମୁଖ୍ୟ ସଂପୂର୍ଣ୍ଣ ଅଭିନବ । ନବ୍ୟ-ସଭ୍ୟ ଜଗତରେ 'ଗଣ' ଶବ୍ଦର ବହୁଳ ପ୍ରଚଳନ ଏ ଅଭିମୁଖ୍ୟ ନିମିତ୍ତ ବହୁ ପରିମାଣରେ ଦାୟୀ । ଗଣତନ୍ତ୍ର, ଗଣଚେତନା, ଗଣଜାଗରଣ ଓ ଗଣସାହିତ୍ୟ ପରି ଗଣଧର୍ମ ଗୋଟିଏ ନବ-ସଙ୍ଗଠିତ-ଶବ୍ଦ । ଦେଶର ଜନସାଧାରଣ ଯେଉଁଠାରେ ବିବିଧ ବ୍ୟକ୍ତିଗତ ସଂକୀର୍ଣ୍ଣତା ଅତିକ୍ରମକରି ସର୍ବ-ସାଧାରଣର ସ୍ୱାର୍ଥ, ସହାନୁଭୂତି ଓ ଶ୍ରଦ୍ଧାସମ୍ବଳିତ ଆଦର୍ଶ ପୀଠରେ ଅବତୀର୍ଣ୍ଣ ହୁଅନ୍ତି, ସେହି ସ୍ଥଳରେ 'ଗଣ'ର ସାର୍ଥକତା ଯଥାର୍ଥରେ ଉପଲବ୍ଧ ହୁଏ । ଉତ୍କଳ ଯୁଗେ ଯୁଗେ ବହୁବିଧ ଧାର୍ମିକ ମତବାଦର ଲୀଳା ବିଳାସର ପବିତ୍ର ରଙ୍ଗମଞ୍ଚ ରୂପେ ଭାରତରେ ସୁପରିଚିତ ଓ ଭାରତୀୟ ସଂସ୍କୃତିର ଇତିହାସରେ ସୁପ୍ରତିଷ୍ଠିତ ହୋଇଆସିଛି । ଅତି ପ୍ରାଚୀନ କାଳର, ଏପରି କି ଯଥାସମ୍ଭବ ପ୍ରାଗୈତିହାସିକ ଯୁଗର, ଆଦିମ ଅଧିବାସୀଙ୍କଠାରୁ ଆରମ୍ଭ କରି ପାଶ୍ଚାତ୍ୟ ଚିନ୍ତା-ବୃଳିତ ଅଧୁନାତନ ଯୁଗର ସୁଶିକ୍ଷିତ ସମ୍ପ୍ରଦାୟ ପର୍ଯ୍ୟନ୍ତ ସମସ୍ତଙ୍କର ହୃଦୟ-କନ୍ଦରରେ, ବହୁ ବୈଷମ୍ୟ ଓ ନାନା ଅସାମଞ୍ଜସ୍ୟ ମଧ୍ୟରେ, ଗୋଟିଏ ମାତ୍ର ଧାର୍ମିକ ଆଦର୍ଶ ଅମ୍ଳାନ ଭାବରେ ସମ୍ମାନିତ ହୋଇଆସିଛି । ତାହା ହେଉଛି ଜଗନ୍ନାଥ ଧର୍ମ ବା ଜଗନ୍ନାଥ ଚେତନା ।

ଉତ୍କଳର ଧାରାବାହିକ ଓ ପୂର୍ଣ୍ଣାଙ୍ଗ ଇତିହାସ ଅଦ୍ୟାବଧି ସଙ୍କଳିତ ହୋଇପାରି ନାହିଁ । ସଂସ୍କୃତ ପୁରାଣ-ସାହିତ୍ୟ, ତନ୍ତ୍ର-

ସାହିତ୍ୟ, ଜୈନ ସାହିତ୍ୟ, ବୌଦ୍ଧ ସାହିତ୍ୟ, ଶିଳାଲେଖ, ତାମ୍ର-ଲେଖ, ସମସାମୟିକ ପ୍ରାଦେଶିକ ସାହିତ୍ୟ ଏବଂ ଓଡ଼ିଆ ସାହିତ୍ୟ ଉଦ୍ଧୃତର ସାହଚର୍ଯ୍ୟରେ ଉତ୍କଳର ବିଭିନ୍ନ ଧାର୍ମିକ ମତବାଦମାନଙ୍କର ପ୍ରଚଳନ, ପ୍ରସାର, ପ୍ରଭାବ ଏବଂ ପରିଣତି ନିରୂପଣ କରାଯାଇପାରେ । 'ଉତ୍କଳଭୂମି' ଭାରତବର୍ଷରୁ ବିଚ୍ଛିନ୍ନ ନୁହେ । ଯେକୌଣସି ଦେଶ ବା ଜାତିର ସଂସ୍କୃତିରେ ଯେଉଁ ବୈଜଶକ୍ତି ଅନ୍ତର୍ନିହିତ ଥାଏ, ତାହା ବର୍ଷାକାଳୀନ କଦମ୍ବବୃକ୍ଷ ତୁଲ୍ୟ ସ୍ୱତଃ ମୁକୁଳିତ ହୁଏ ଏବଂ ସମତଳ କ୍ଷେତ୍ରର ଉତ୍ତରଳ ଜଳ ପ୍ରବାହ ତୁଲ୍ୟ ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହେବାକୁ ଚେଷ୍ଟିତ ହୁଏ । ଉତ୍କଳର ଗଣଧର୍ମରେ ପ୍ରତିବେଶୀ ଜାତିମାନଙ୍କର ପ୍ରଭାବ ଯେ ନିପତିତ ହୋଇଥିବ, ଏ ସମ୍ଭାବନା ଆଦୌ ଅସମୀଚୀନ ନୁହେ । ପୁଣି ଯେକୌଣସି ନିର୍ଦ୍ଦିଷ୍ଟ ଶତାବ୍ଦୀର ଧର୍ମଧାରଣା ଏବଂ ସାଧାରଣ ବିଶ୍ୱାସ, ପୂର୍ବବର୍ତ୍ତୀ ଶତାବ୍ଦୀର ପରମ୍ପରାରୁ ଯେ ବିମୁକ୍ତ ହୋଇ ଥାଇପାରେ ଏହା ମଧ୍ୟ କଳ୍ପନାର ପରିସର ମଧ୍ୟରେ ଅବସ୍ଥିତ ଥାଇ ନ ପାରେ । ସୁତରାଂ ପୁରାଣବିଶ୍ରୁତ ଉତ୍କଳର ଧର୍ମଧାରଣାର ବିକାଶ ପଥ ନିର୍ଦ୍ଦେଶିତ ନହେଲେ ଗଣଧର୍ମର ସ୍ୱରୂପ ଓ ଆକୃତି-ପ୍ରକୃତି ଅବଧାରଣ କରିବା ସହଜସାଧ୍ୟ ହେବ ନାହିଁ ।

ଭାରତବର୍ଷରେ ଯେଉଁ ଧର୍ମ ଆର୍ଯ୍ୟମାନଙ୍କଦ୍ୱାରା ପ୍ରବର୍ତ୍ତିତ, ପ୍ରଚାରିତ ଓ ପ୍ରତିଷ୍ଠିତ ହୋଇଥିଲା ତାହା ଏକାଧିକ ନାମରେ ବହୁ ଶତାବ୍ଦୀ ପରେ ବର୍ତ୍ତମାନ ଅଭିହିତ ହେଉଅଛି । ସନାତନ ଧର୍ମ, ଆର୍ଯ୍ୟଧର୍ମ, ବୈଦିକଧର୍ମ, ହିନ୍ଦୁଧର୍ମ ପ୍ରଭୃତି ଶବ୍ଦ ସେହି ବିଶ୍ୱବିଖ୍ୟାତ ଆର୍ଷଯୁଗରୁ ଆରବ୍ଧ ଧର୍ମର ପର୍ଯ୍ୟାୟବାଚକ ଶବ୍ଦରୂପେ କୌଣସି କୌଣସି ପଣ୍ଡିତଙ୍କ ଦ୍ୱାରା ବ୍ୟବହୃତ ହେଉଅଛି । ଏ

ଶବ୍ଦାବଳୀର ଅର୍ଥଗତ ସାର୍ଥକତା ଅପାତ ରମଣୀୟ ପ୍ରତୀତ ହେଲେ ମଧ୍ୟ ବିଭିନ୍ନ ଯୁଗରେ ପୂର୍ବବର୍ତ୍ତୀ ଧାରଣାର ପରିବର୍ତ୍ତନ ଏବଂ ଅଭିନବ ଆଦର୍ଶର ସଂଯୋଜନ ଓ ସଂଗ୍ରଥନ ଦ୍ୱାରା ଯେ ଆଦିମ ଆର୍ଷ ଭାବଧାରାର ରୂପାନ୍ତର ସଙ୍ଘଟିତ ହୋଇଆସିଛି, ଏକଥା ଶାସ୍ତ୍ରବିଶ୍ୱାସୀ ପଣ୍ଡିତ ନହେଲେ ମଧ୍ୟ ଶାସ୍ତ୍ରପରୀକ୍ଷକ ଐତିହାସିକ ମଣ୍ଡଳୀ ଶତମୁଖରେ ପ୍ରଚାର କରୁଛନ୍ତି । ଏକ ସମୟରେ ଆର୍ଯ୍ୟାବର୍ତ୍ତନିବାସୀ ନୈଷ୍ଠିକ ଋଷି ସନ୍ତାନ ଉତ୍କଳରେ ପଦାର୍ପଣ କରିବାକୁ କୁଣ୍ଠିତ ହେଉଥିଲେ—ଏପରି କି ଉତ୍କଳ ପର୍ଯ୍ୟଟକ ଆର୍ଯ୍ୟ-ମାନେ ଅସଂସ୍କୃତ ବା ପତିତ ବୋଲି ବିବେଚିତ ହେଉଥିଲେ । ଦ୍ରାବିଡ଼ ଶବର-ଭିଲ୍ଲ ଅଧ୍ୟୁଷିତ ଉତ୍କଳରେ ଆର୍ଯ୍ୟ ସଂସ୍କୃତିର ବିମଳ ବାରିଧାରା ଯେତେବେଳେ ପ୍ରସାରିତ ହେଲା, ଭାଷା ଓ ଧାର୍ମିକ ମନୋବୃତ୍ତିରେ ବିଲକ୍ଷଣ ପରିବର୍ତ୍ତନ ହେବା ଅନିବାର୍ଯ୍ୟ ହୋଇଉଠିଲା । ବୁଦ୍ଧଦେବଙ୍କ ଆବିର୍ଭାବ ଆର୍ଯ୍ୟ ଜାତିର ଚିନ୍ତା-ରାଜ୍ୟରେ ଯେଉଁ ଆଧିପତ୍ୟ ବିସ୍ତାର କରିଥିଲା, ତୃତୀୟ ଶତାବ୍ଦୀରେ ଅଶୋକଙ୍କର କଳିଙ୍ଗ ବିଜୟର ପରମୁହୂର୍ତ୍ତରୁ ଉତ୍କଳର ଗଣଜୀବନରେ ବୌଦ୍ଧଧର୍ମ ତଦପେକ୍ଷା ଅଳ୍ପ ପ୍ରଭାବ ପକାଇ ନଥିଲା । ବିଂଶ ଶତାବ୍ଦୀରେ ଦଣ୍ଡାୟମାନ ହୋଇ ଅତୀତର ଦୁଇ ସହସ୍ର ଅବ୍ଦ ବର୍ଷ ଉପରେ ବିହଙ୍ଗମ ଦୃଷ୍ଟି ନିକ୍ଷେପ କଲେ କେବଳ ଏତିକି ପ୍ରତିଭାତ ହେବ ଯେ, ଅଚଳ ମହାମେରୁ ତୁଲ୍ୟ ଜଗନ୍ନାଥଭୂମି 'ମେରୁ ମନ୍ଦର କମ୍ପି' ନିଜର ତୁଙ୍ଗ ମସ୍ତକ ଉତ୍ତୋଳନ କରି ଅଟଳ ଅଚଳ ରହିଅଛି ଏବଂ ଧର୍ମଗୁରୁମାନଙ୍କର ପ୍ରଚାରିତ ମତ-ତରଙ୍ଗ-ରାଜି କ୍ଷୁଦ୍ର ଆଘାତ ବ୍ୟାଜରେ ସତେ ଯେପରି ଜଗନ୍ନାଥଙ୍କର ପ୍ରେମାଲିଙ୍ଗନରେ ଉଚ୍ଛ୍ୱସିତ ହୋଇ ଉଠିଅଛନ୍ତି । ଜୈନ, ବୌଦ୍ଧ ବୈଷ୍ଣବ, ଶାକ୍ତ, ସୌର, ଶୈବ, ଗାଣପତ୍ୟ ପ୍ରଭୃତି ଭାରତ-

ବିଖ୍ୟାତ ମତବାଦ ଓ ଦେବଦେବୀଙ୍କଠାରୁ ଆରମ୍ଭକରି ମତ୍ସ୍ୟେନ୍ଦ୍ର ନାଥ, ଗୋରଖନାଥ କିମ୍ବା ଭୀମ ଭୋଇ ଓ ଅରକ୍ଷିତ ଦାସଙ୍କ ପର୍ଯ୍ୟନ୍ତ କାହାରି ଅନାଦୃତ ଓ ଅସମ୍ମାନରେ ଉତ୍କଳ ନିଜର ନୈତିକ ସଂକୋଚ ଅଥବା ଧାର୍ମିକ ଖର୍ବତା ପ୍ରଦର୍ଶନ କରିନାହିଁ । ଯୁଗ ଭେଦରେ, ଶାସକ ଭେଦରେ, ପ୍ରବୃତ୍ତିକ ଭେଦରେ ସାହିତ୍ୟ ଭେଦରେ ଓ ରାଜନୈତିକ ସ୍ଥିତି ଭେଦରେ ଗୋଟିଏ ଗୋଟିଏ ଧର୍ମମତ ନିଜ ନିଜର ଚରମ ଉତ୍କର୍ଷ ଓ ପରମ ଉନ୍ନତି ସମ୍ପାଦନ କରିବାକୁ ସମର୍ଥ ହୋଇଅଛି । ଉତ୍କଳୀୟର ଉଦାର ହୃଦୟରେ କାହାରି ପ୍ରତି ବିତୃଷ୍ଣାର ଆଭାସ ସୁଦ୍ଧା ଅଭିବ୍ୟକ୍ତ ହୋଇନାହିଁ କିମ୍ବା ଉତ୍କଳୀୟ ଚିନ୍ତାଧାରାର ଗଭୀରତମ ପ୍ରଦେଶକୁ ସର୍ବଧର୍ମର ସମନ୍ୱୟ ପୀଠ – ଜଗନ୍ନାଥ ଧାରଣାର ମୂଳୋତ୍ପାଟନରେ କୌଣସି ଦୁର୍ଦ୍ଦାନ୍ତ ପ୍ରବୃତ୍ତିକ ମଧ୍ୟ ଆକ୍ରାନ୍ତ ହୋଇନାହିଁ ।

ଧାର୍ମିକ ସମନ୍ୱୟର ମହୋଦାର ପୀଠ ଜଗନ୍ନାଥଙ୍କର ଉତ୍ପତ୍ତି କ୍ରମ ବାଦାନୁବାଦର ନୀରସ ତର୍କଜାଲ ମଧ୍ୟରେ ଲୁକ୍କାୟିତ ହୋଇଅଛି । ବ୍ରାହ୍ମଣ୍ୟଧର୍ମ, ବୌଦ୍ଧଧର୍ମ, ଜୈନଧର୍ମ ଏବଂ ଆଦିମ ଜାନପଦ ଲୋକର ମୌଳିକ ସଂସ୍କୃତି, ଏହି ଚତୁର୍ବିଧ ଦୃଷ୍ଟି-କୋଣରୁ ଜଗନ୍ନାଥ ରହସ୍ୟର ମତବାଦ ଚତୁର୍ମୁଖୀ ଉପସ୍ଥାପିତ ହୋଇଅଛି । ପ୍ରତ୍ୟେକ ମତବାଦୀ ନିଜର ମତପୋଷକତାର ଅନୁରୂପ ଉପାଦାନ ସଂଗ୍ରହକରି ପ୍ରତିବାଦୀ ମତ ନିରାକରଣରେ ମୁଖର ହୋଇଉଠିଛନ୍ତି । ସୁତରାଂ ବର୍ତ୍ତମାନ କ୍ଷେତ୍ରରେ ଆଲୋ-ଚନାର ପ୍ରାସଙ୍ଗିକତା ସଂରକ୍ଷଣ କରିବା ପାଇଁ ସେ ସମସ୍ତର ଅବତାରଣା ଏକାନ୍ତ ଅନୁପାଦେୟ ବୋଧ ହେଉଅଛି । ବୁଦ୍ଧ-

ଦେବଙ୍କର ଧର୍ମପ୍ରଚାର ସମୟରେ ଉତ୍କଳବାସୀ ତପୁସ ଓ ଭଲ୍ଲୁକ ନାମଧେୟ ସ୍ୱାର୍ଥବାହ ଦ୍ୱୟ ପରମ ଆଗ୍ରହରେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିବା ଜଣାଯାଏ । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ନନ୍ଦ ରାଜତ୍ୱ କାଳରେ ବୌଦ୍ଧଧର୍ମର ମନ୍ଦ ମଳୟ ଉତ୍କଳରେ ପ୍ରବାହିତ ହୋଇଥିବାର ତାଦୃଶ ଉଲ୍ଲେଖଯୋଗ୍ୟ ପ୍ରମାଣ ଉପଲବ୍‌ଧ ହୋଇନାହିଁ । ସଂସ୍କୃତିର ସ୍ୱଭାବସୁଲଭ ଆତ୍ମ-ପ୍ରସାରଣ ନୀତି ନିରୀକ୍ଷଣ କଲେ ପ୍ରତିପନ୍ନ ହୁଏ ଯେ, ନନ୍ଦ ରାଜତ୍ୱର ଅବସାନ ପରେ ଉତ୍କଳରେ ଜୈନ ଓ ବୌଦ୍ଧଧର୍ମର ସ୍ରୋତ ପ୍ରବେଶୋନ୍ମୁଖ ଅବସ୍ଥାରେ ଥିବ । ପ୍ରାତଃସ୍ମରଣୀୟ ଦେବାନାଂପ୍ରିୟ ଅଶୋକଙ୍କର ନାମ ଉତ୍କଳ ଇତିହାସରେ ମଧ୍ୟ ସୁବର୍ଣ୍ଣ ବର୍ଣ୍ଣରେ ରଞ୍ଜିତ ହୋଇ ରହିଅଛି । ଅଶୋକଙ୍କ ପ୍ରଚାରିତ 'ଧର୍ମ' ବ୍ରାହ୍ମଣ୍ୟଧର୍ମର ଉଦାର ନୀତିମାଳାରୁ ବ୍ୟବଚ୍ଛିନ୍ନ ନୁହେ । ତଥାପି ଧର୍ମାଶୋକ ବୌଦ୍ଧଧର୍ମର ସଂପ୍ରସାରଣରେ ବଦ୍ଧପରିକର ହୋଇ ଧାର୍ମିକ-ରାଜନୀତିର ଉଜ୍ଜ୍ୱଳ ଆଦର୍ଶ ପ୍ରତିଷ୍ଠା କରିଯାଇଥିଲେ । ତଦାନୀନ୍ତନ ଅନାର୍ଯ୍ୟ ଆଦିବାସୀ ଓ ଜନସାଧାରଣ ବୌଦ୍ଧଧର୍ମର ରାଜପୋଷକତା ହେତୁ ତଦନୁବର୍ତ୍ତୀ ହୋଇଥିବା ଯେପରି ସହଜରେ ଅନୁମେୟ, ସମ-ସାମୟିକ ଐତିହାସିକ ପ୍ରମାଣରୁ ଗଣଧର୍ମରେ ବୌଦ୍ଧ ପ୍ରଭାବର ଜୀବନ୍ତ ଦୃଷ୍ଟାନ୍ତ ସେହିପରି ଅକ୍ଲେଶରେ ଉପଲଭ୍ୟ । ଅଶୋକଙ୍କର ବୌଦ୍ଧଧର୍ମାନୁରାଗ ପରି ଖାରବେଳଙ୍କର ଜୈନଧର୍ମାବଲମ୍ବିତା ଏ ଦେଶରେ ଜୈନଧର୍ମର ପରିପ୍ଲାବନର ମୂଳ ତଥା ମୁଖ୍ୟ କାରଣ ହୋଇଥିଲା । ପୁରାଣପ୍ରସିଦ୍ଧ ଏକାମ୍ର କାନନର ଉଭୟ ପାର୍ଶ୍ୱରେ ଅଦ୍ୟାବଧି ବୌଦ୍ଧ ଓ ଜୈନ କୀର୍ତ୍ତିରାଜି ମୂକସାକ୍ଷୀ ରୂପେ ଦଣ୍ଡାୟ-ମାନ ହୋଇ ଖ୍ରୀଷ୍ଟପୂର୍ବ ଉତ୍କଳରେ ଗଣଧର୍ମର ସଙ୍କେତ ପ୍ରଦାନରେ ସତେ ଯେପରି ନିତ୍ୟନିଯୋଜିତ ରହିଅଛନ୍ତି ।

ଦୋଉଳି ଓ ଖଣ୍ଡଗିରି ଉତ୍କଳର ଶିଳ୍ପ, ସାଧନା ଓ ଗଣସଂସ୍କୃତିର ଜ୍ୱଳନ୍ତ ସଙ୍କେତ ।

ଭାରତୀୟ ଜାତୀୟ ଇତିହାସରେ ଗୁପ୍ତରାଜତ୍ୱ ସାହିତ୍ୟିକ ଉତ୍କର୍ଷ ଓ ବ୍ରାହ୍ମଣ୍ୟଧର୍ମର ଅଭ୍ୟୁତ୍ଥାନ ନିମନ୍ତେ ସୁପ୍ରସିଦ୍ଧ । ସେହି ସମକାଳୀନ ଉତ୍କଳର ମାଠର ଓ ବାଶିଷ୍ଠ ରାଜାମାନେ ନିଜ ନିଜକୁ ପରମ ଦୈବତ ଓ ପରମ ଭାଗବତ ରୂପେ ଅଭିହିତ କରୁଥିଲେ । ବ୍ରାହ୍ମଣ୍ୟ ଓ ବୈଷ୍ଣବଧର୍ମର ରାଜାନୁବର୍ତ୍ତିତା, ଧର୍ମ-ମର୍ମ ପ୍ରଖ୍ୟାପକ ଏତାଦୃଶ ଅର୍ଥଗମ୍ଭୀର ଉପାଧିମାନଙ୍କରୁ ସ୍ପଷ୍ଟ ପରିଜ୍ଞାତ ହୁଏ । ଶୈଳୋଦ୍ଭବ ବଂଶୀୟ ନୃପତିମାନଙ୍କର ବିପୁଳ ବାହୁ-ଗ୍ରୟାରେ ବ୍ରାହ୍ମଣ୍ୟଧର୍ମ ସଙ୍ଗେ ଶିବପ୍ରଧାନ ଉପାସନା ମଧ୍ୟ ପ୍ରସାରିତ ହୋଇଥିଲା । କର୍ଣ୍ଣସୁବର୍ଣ୍ଣର ରାଜା କୋଙ୍ଗଦ ଆକ୍ରମଣ କରିଥିଲେ ଏବଂ ବୌଦ୍ଧମତ ବିରୋଧରେ ବ୍ରତୀ ହୋଇପଡ଼ିଥିଲେ । ସେହି ସମୟରେ କଳିଙ୍ଗ ଏବଂ କୋଙ୍ଗଦରୁ ଧୀରେ ଧୀରେ ବୌଦ୍ଧ ଆଧିପତ୍ୟ ଅପସାରିତ ହୋଇଥିଲା । ତଥାପି କରବଂଶୀୟ ରାଜା-ମାନଙ୍କ ରାଜତ୍ୱକାଳରେ ଉତ୍କଳରେ ବୌଦ୍ଧଧର୍ମର ସମାଦର ଓ ପୁନଃ ପ୍ରସାରଣ ପରିଦୃଷ୍ଟ ହେଲା । ଉତ୍କଳର ଗଣଧର୍ମ, ରାଜାନୁବର୍ତ୍ତିତା ପରିତ୍ୟାଗ କରି ନ ଥିଲେ ମଧ୍ୟ କେବଳ ଅନ୍ଧଭାବରେ ରାଜଧର୍ମର ନିଗଡ଼ ବନ୍ଧନୀ ମଧ୍ୟରେ ନିଜକୁ ଆବଦ୍ଧ ରଖି ନଥିଲା । ଖାରବେଳ ବ୍ରାହ୍ମଣ୍ୟ ବିଧିରେ ରାଜସୂୟ ଯଜ୍ଞାନୁଷ୍ଠାନ କରିଥିଲେ ଏବଂ ହାତୀଗୁମ୍ଫା ଶିଳାଲେଖରେ ସେ 'ସବପାଷାଣ୍ଡ ପୂଜକ' ରୂପେ ଅଭିହିତ ହୋଇଅଛନ୍ତି । ସେହି ସମୟରୁ ଆନୁମାନିକ ସପ୍ତ-ଶତାବ୍ଦୀ ମଧ୍ୟରେ ଉତ୍କଳବାସୀ ବ୍ରାହ୍ମଣ୍ୟ, ବୌଦ୍ଧ ବା ଜୈନ ପ୍ରଭୃତି ପ୍ରଚଳିତ କୌଣସି ମତବାଦ ପ୍ରତି ଅନାସ୍ଥା ପ୍ରଦର୍ଶନକରି

ନାଡାନ୍ତ । ତ୍ରିଭୁବନ ମହାଦେବୀ ଏବଂ ଶୁଭାକର ଦେବ ଯଥାକ୍ରମେ ପରମ ବୈଷ୍ଣବୀ ଏବଂ ପରମ ମାହେଶ୍ୱର ଉପାଧିରେ ବିଭୂଷିତ ହୋଇଥିଲେ ।

ଖ୍ରୀଷ୍ଟୀୟ ସପ୍ତମଠାରୁ ଦଶମ-ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳର ଗଣଧର୍ମରେ ଘାତ-ପ୍ରତିଘାତ, ଅନ୍ତର୍ଯୁଦ୍ଧ, ଖଣ୍ଡନ-ମଣ୍ଡନ ପ୍ରଭୃତି ଆତ୍ମପ୍ରକାଶ କରିଥିଲା । ବୌଦ୍ଧଧର୍ମ ତନ୍ତ୍ର ପ୍ରଭାବରେ କିମ୍ଭୂତ କିମାକାର ରୂପ ଧାରଣକରି ବଜ୍ରଯାନ, ସହଜଯାନ ପ୍ରଭୃତିର ସୃଷ୍ଟି କରିଥିଲା । ନାଗାର୍ଜ୍ଜୁନୀୟ ଶୂନ୍ୟବାଦ କୋଟି କୋଟି ଲୋକ ମନଗହନରେ ପରିବ୍ୟାପ୍ତ ହୋଇଯାଇଥିଲା । ମଞ୍ଜୁଶ୍ରୀ, ବୋଧିଶ୍ରୀ ପ୍ରମୁଖ ନାଗାନ୍ତଙ୍କ ମତବାଦ ପ୍ରଚାର କରିଥିଲେ । ପଞ୍ଚ-ସଖାଙ୍କର ଓଡ଼ିଆ ସାହିତ୍ୟରେ ଯେଉଁ ନାଗାନ୍ତ, ଯୋଗାନ୍ତ ପ୍ରଭୃତି ବିଦ୍ୟାର ଉଲ୍ଲେଖ ଅଛି, ତାହା ବୋଧହୁଏ ଗଣଧର୍ମ-ଧାରଣା-ନିବଦ୍ଧ ନାଗାର୍ଜ୍ଜୁନୀୟ ମତବାଦ ଓ ଯୋଗାଚାର ଦର୍ଶନତତ୍ତ୍ୱର ପ୍ରତିବୋଧକ । ତନ୍ତ୍ରର ତୀବ୍ରତାରେ ଶବଳିତ ବୌଦ୍ଧ, ଶୈବ ଓ ବୈଷ୍ଣବଧର୍ମ ଉନ୍ମୂଳ ବିପ୍ଳବର କବଳିତ ହୋଇଥିଲେ ଏବଂ ଏମାନଙ୍କର ବିରୁଦ୍ଧାତ୍ମକସତ୍ତ୍ୱ ସମନ୍ୱିତ ବିଗ୍ରହରେ ଜନପ୍ରିୟତା ଲାଭ କରିଥିଲା ।

'ଦଶମ-ଏକାଦଶ ଶତାବ୍ଦୀ ଓଡ଼ିଶା' ଗଣଧର୍ମ, ସ୍ଥାପତ୍ୟ ଓ ଶାସ୍ତ୍ରଚର୍ଚ୍ଚାର ଇତିହାସରେ ଆଜି ସ୍ମରଣୀୟ । କେଶରୀବଂଶୀୟ ସୋମବଂଶୀ ନରପତିମାନଙ୍କର ଅଦମ୍ୟ ଉତ୍ସାହରେ କ୍ରମସଙ୍କୁଚିତ ବୌଦ୍ଧଧର୍ମ ପରିବର୍ତ୍ତେ ବ୍ରାହ୍ମଣ୍ୟଧର୍ମ ଅକଳନୀୟ ଉନ୍ନତି ଲାଭ କରିଥିଲା । ଓଡ଼ିଆ ଗଣଚେତନାର ନୈସର୍ଗିକ ସମନ୍ୱୟବାଦିତା

ଯୁଗ୍ରି ଥରେ ପ୍ରଖ୍ୟାତ ହୋଇଉଠିଥିଲା । ଶଙ୍କରାଚାର୍ଯ୍ୟଙ୍କର ଅଦ୍ୱୈତବାଦର ପ୍ରସାର କଲ୍ପେ ଶ୍ରୀକ୍ଷେତ୍ରରେ ମଠ ସଂସ୍ଥାପନ ଅନ୍ୟ ଏକ ଗୌରବୋଜ୍ଜ୍ୱଳ ଘଟଣା । କେଶରୀ ରାଜାମାନେ ଶିବପ୍ରଧାନ ଉପାସକ ଥିଲେ ମଧ୍ୟ ସ୍ମାର୍ତ୍ତମତାନୁରୂପ ବୈଷ୍ଣବବାଦ ସଂପ୍ରଦାୟର ବହିଷ୍କାଚରଣ କରୁ ନଥିଲେ । ବୌଦ୍ଧ ରାଜ୍ୟ ଅବସ୍ଥିତ ମାଳମାଧବ ଓ ସିଦ୍ଧେଶ୍ୱର ମନ୍ଦିରର ଗଠନଭଙ୍ଗୀ ତତ୍କାଳୀନ ଉଭୟ ଦେବତାଙ୍କ ସମପ୍ରାଧାନ୍ୟର ପ୍ରମାଣ ପ୍ରଦାନକରେ । ବିଖ୍ୟାତ ଶୈବପୀଠ ଲିଙ୍ଗରାଜ ମନ୍ଦିରରେ ଗରୁଡ଼ ଓ ବୃଷଭଙ୍କର ଏକତ୍ର ସମାବେଶ, ଧନୁ ଓ ଚକ୍ରର ଅପୂର୍ବ ସମନ୍ୱୟ, ତୁଳସୀ ଓ ବିଲ୍ୱଦଳର ଏକତ୍ର ନିବେଦନ, ହରି ଓ ହର ଶବ୍ଦଦ୍ୱୟର ଏକତ୍ର ଉଚ୍ଚାରଣରେ ଲିଙ୍ଗରାଜଙ୍କର ନାମକୀର୍ତ୍ତନ ଏ ସମସ୍ତରେ ଉତ୍କଳୀୟ ଗଣଧର୍ମର ମହୌଦାର୍ଯ୍ୟ ଓ ସମନ୍ୱୟବାଦୀ ମନୋବୃତ୍ତି ପ୍ରତିଫଳିତ ହୋଇଅଛି । ବ୍ରାହ୍ମଣ୍ୟଧର୍ମ, ଲୁପ୍ତପ୍ରାୟ ବୌଦ୍ଧ ଓ ଜୈନ୍ୟଧର୍ମର କରୁଣା ଏବଂ ଅହିଂସା, ତାନ୍ତ୍ରିକତାର ବିବିଧ ଓ ବିକୃତ ବିଧି ବିଧାନ ପ୍ରଭୃତି ସ୍ୱଳ୍ପ ସମୟ ବ୍ୟବଧାନରେ ଏକ ପକ୍ଷରେ ବଜ୍ରଯାନ, ତନ୍ତ୍ରଯାନ, ସହଜଯାନ ଓ ଅନ୍ୟ ପକ୍ଷରେ ସହଜିଆ ବୈଷ୍ଣବ, ନାଥ ଉପାସନାଠାରୁ ବହୁ ଗୌଣଧର୍ମ-ସଂପ୍ରଦାୟ ପର୍ଯ୍ୟନ୍ତ ପରବର୍ତ୍ତୀ କାଳରେ ସୃଷ୍ଟି କରିଥିଲେ । ଉତ୍କଳର ଗଣପ୍ରାଣ, ଧର୍ମ-ଗୁରୁମାନଙ୍କର ପ୍ରଚାରିତ ମତବାଦ ପ୍ରତି ଯେପରି ଆକୃଷ୍ଟ ହୋଇଅଛି, ସେହିପରି ସେ ସମସ୍ତର ତିରୋଭାବ ପରେ ମଧ୍ୟ ମତବାଦଗର୍ଭିତ ନୀତିମାନଙ୍କର ମୂଲ୍ୟ କଳନାରେ ଉନ୍ମୁଖତା ପ୍ରଦର୍ଶନ କରିଆସିଛି ।

କେଶରୀ-କାଳୀନ ଶିବପ୍ରଧାନ ଉପାସନା ପରେ ଗଙ୍ଗବଂଶର ରାଜତ୍ୱ ସମୟରୁ ବିଷ୍ଣୁ-ପ୍ରଧାନ ଉପାସନା ବିଶେଷ ପ୍ରତିପତ୍ତିର

ଅଧିକାଂଶ ହେଲ । ବଜ୍ରଯାନରୁ ସାମାଜିକ ଅନିଷ୍ଟ ଦୂରୀକରଣ ଲାଗି ଶାକ୍ତମତ ଗ୍ରହଣର କାର୍ଯ୍ୟକାରିତା 'କେଶରୀ କାଳ'ରେ ଅନୁଭୂତ ହୋଇଥିବା ଅନୁମିତ ହୁଏ । ଚଉରାଶୀତ ସିଦ୍ଧ ପୁରୁଷଙ୍କ ପ୍ରଭାବ ଉତ୍କଳକୁ ଯେପରି ଧର୍ମୋନ୍ମୁଖ କରିଥିଲା, ବ୍ରାହ୍ମଣ୍ୟ ଧର୍ମ ବିରୁଦ୍ଧରେ ସମସାମୟିକ ଗଣପ୍ରାଣ ଖଡ୍ଗହସ୍ତ ହୋଇଉଠିଥିବାରୁ ନାଥ-ସଂପ୍ରଦାୟୀ ପ୍ରଭୃତି ସେହିପରି ବେଦାଧ୍ୟୟନ ଓ ତୀର୍ଥଯାତ୍ରା ବିରୁଦ୍ଧରେ ମତବ୍ୟକ୍ତ କରିଥିଲେ । ସୁତରାଂ, ଗଙ୍ଗବଂଶର ରାଜତ୍ୱ ପର୍ଯ୍ୟନ୍ତ ଓଡ଼ିଶାର ଗଣଧର୍ମ ମଧ୍ୟରେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଧାର୍ମିକ ମତବାଦର ଏକାଧିପତ୍ୟ ଉଲ୍ଲେଖ କରାଯାଇପାରିବ ନାହିଁ ।

ଜଗଦଗୁରୁ ଶଙ୍କରାଚାର୍ଯ୍ୟଙ୍କ ସମୟରୁ 'ପ୍ରସ୍ଥାନତ୍ରୟୀ', ସଂପ୍ରଦାୟ ପ୍ରବର୍ତ୍ତନର ଭିତ୍ତି ରୂପେ ବିବେଚିତ ହେଲା । ଶ୍ରୁତି, ସୂତ୍ର ଓ ଗୀତା, ଏ ଗ୍ରନ୍ଥମାନଙ୍କ (୧) ଉପରେ ବିନା ଭାଷ୍ୟ ପ୍ରଣୟନରେ ସଂପ୍ରଦାୟ ପ୍ରବର୍ତ୍ତନ ଅସମ୍ଭବ ହୋଇଉଠିଲା । ଦାକ୍ଷିଣାତ୍ୟରେ ଆଚାର୍ଯ୍ୟ ଏବଂ ଆଲୱାରମାନଙ୍କର ତୀବ୍ର ମତବିରୁଦ୍ଧତା ସଂଜାତ ହେଲା ।

ଶଙ୍କରାଚାର୍ଯ୍ୟ ଅଦ୍ୱୈତ ଦର୍ଶନର ଭିତ୍ତିରେ ଗୀତାଭାଷ୍ୟ ପ୍ରଣୟନକରି ମୁକ୍ତିସାଧନ ରୂପେ ଜ୍ଞାନମାର୍ଗର ପ୍ରତିଷ୍ଠା କରି-ଯାଇଥିବାରୁ ପ୍ରାୟ ତିନି ଶତ ବର୍ଷ ପରେ ରାମାନୁଜାଚାର୍ଯ୍ୟ ଗୀତାନ୍ତର୍ଗତ ଭକ୍ତିକାଣ୍ଡର ପ୍ରତିଷ୍ଠା ଓ ଜ୍ଞାନମାର୍ଗର ଖଣ୍ଡନ କରି-ଥିଲେ । ଏ ଦୁଇ ଧର୍ମଗୁରୁଙ୍କ ବ୍ୟକ୍ତିତ ଜୟଦେବ ଉତ୍କଳରେ

---

(୧) ଏହି ତିନୋଟିକୁ ପ୍ରସ୍ଥାନତ୍ରୟୀ କୁହାଯାଏ ।

ଭାଗବତ ଅନୁସାରେ ରାଧା-କୃଷ୍ଣ ପ୍ରେମଧର୍ମର ମଧୁର ମନ୍ଦାକିନୀ ଗୀତଗୋବିନ୍ଦର ସୁରଭିତ ନନ୍ଦ-ଶଯ୍ୟାରେ ପ୍ରବାହିତ କରିଦେଲେ। ପରେ ମାଧ୍ୱ ଓ ବଲ୍ଲଭୀୟ ମତବାଦ ମଧ୍ୟ ଏ ଦେଶରେ ପ୍ରସାର ଲାଭକଲା । ବୈଷ୍ଣବଧର୍ମ ପ୍ରଚାରକମାନଙ୍କ ମଧ୍ୟରେ ମୁଖ୍ୟ ଦେବତାଙ୍କର 'ନାମ' ଯେନି ବାଦ ବିସମ୍ବାଦ ଅଭିବ୍ୟକ୍ତ ହେଲା । ଦାକ୍ଷିଣାତ୍ୟରେ 'ଉତ୍ତର ପକ୍ଷା' ଓ 'ଦକ୍ଷିଣ ପକ୍ଷା' ମଧ୍ୟରେ ଗଣଧର୍ମର ସ୍ୱରୂପ ଓ ମନ୍ତ୍ରାଧିକାରିତା ଦୃଷ୍ଟିରୁ ବାଦାନୁବାଦ ପ୍ରବର୍ତ୍ତିତ ହେଲା । ବିଶିଷ୍ଟାଦ୍ୱୈତବାଦୀ ରାମାନୁଜାଚାର୍ଯ୍ୟ ନିଜର ଶିଷ୍ୟମାନଙ୍କୁ 'ନାରାୟଣ' ଉପାସନା କରିବାକୁ ଉପଦେଶ ଦେଇ-ଥିଲେ । କାମରୂପ ବା ଆସାମରେ ଶଙ୍କର ଦେବ 'ଏକ ଶରଣୀୟ ଧର୍ମ' ପ୍ରଚାରକଲେ ଏବଂ ସମଗ୍ର-ପ୍ରାଚ୍ୟ ଭାରତ ଭୂଖଣ୍ଡରେ ବ୍ରାହ୍ମଣ ଓ ବ୍ରାହ୍ମଣେତର ଜାତିମାନଙ୍କ ମଧ୍ୟରେ ଉପାସ୍ୟ ଦେବଦେବୀ, ମନ୍ତ୍ରଦୀକ୍ଷା ଓ ଧର୍ମପ୍ରଚାରର ଭାଷା ଯେନି ଘୋର ମତାନ୍ତର ପ୍ରକଟିତହେଲା । ତ୍ରୟୋଦଶଠାରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ କୁମାରିକାଠାରୁ କାମରୂପ ମଧ୍ୟରେ ଏ ଯେଉଁ ବିରୋଧଭାବ ରୂପ ପରିଗ୍ରହ କରିଥିଲା, ଉତ୍କଳରେ ତାହାର ପ୍ରଭାବ ଓ ପରିଣତିର ନିଦର୍ଶନ ରୂପେ ଶ୍ରୀକ୍ଷେତ୍ରକୁ କେନ୍ଦ୍ର କରି ଶାସନୀ ସ୍ମାର୍ତ୍ତ ବ୍ରାହ୍ମଣଙ୍କର ଦ୍ୱନ୍ଦ୍ୱ ଆରମ୍ଭ ହୋଇଥିଲା । ବ୍ରାହ୍ମଣେତର ଜାତିର ବାଣୀସାଧକ ଓ ଧର୍ମଗୁରୁମାନଙ୍କ ସଙ୍ଗରେ ୧୫୧୦ ଖ୍ରୀଷ୍ଟାବ୍ଦରେ ଚୈତନ୍ୟଙ୍କର ଉତ୍କଳାଗମନ ସଙ୍ଗେ ସଙ୍ଗେ ବିପ୍ଳବମୁଖୀ ବ୍ରାହ୍ମଣେତର ଜାତିସ୍ଥ ଧର୍ମଗୁରୁମାନେ ଗୌରବମଣ୍ଡିତ ହୋଇ ଗଣଧର୍ମର ଆଭିମୁଖ୍ୟରେ ଉପାଦେୟ ପରିବର୍ତ୍ତନ ଘଟାଇଥିଲେ ।

ଓଡ଼ିଆ ସାହିତ୍ୟର ଇତିହାସରେ ଏ ସମସ୍ତର ଜ୍ୱଳନ୍ତ ଦୃଷ୍ଟାନ୍ତ ପରିଦୃଷ୍ଟ ହୁଏ । ବୌଦ୍ଧଗାନ ଓ ଦୋହା, ସାରଳା

ମହାଭାରତ, ମହାଭାଗ, ଦାଣ୍ଡିରାମାୟଣ, କୁଳାର୍ଣ୍ଣବ, ବିଷ୍ଣୁଗର୍ଭ ପୁରାଣ, ନିର୍ଗୁଣ ମାହାତ୍ମ୍ୟ, ମୁକ୍ତିଚିନ୍ତାମଣି ଓ ମଧ୍ୟମଣ୍ଡଳଗୀତା ପ୍ରଭୃତିରେ ଉତ୍କଳୀୟ ଗଣଧର୍ମର ବହୁବିଧ ତଥ୍ୟ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଲିପିବଦ୍ଧ ହୋଇଅଛି । ତେଣୁ ଐତିହାସିକ ଉପାଦାନ ଓ ପାଣ୍ଡିତ୍ୟକ ତଥ୍ୟରାଜିର ସାହଚର୍ଯ୍ୟରେ ଉତ୍କଳର ଗଣଧର୍ମର ସ୍ୱରୂପ ନିର୍ଦ୍ଦେଶ କରିବାକୁ ଯାଇ ଏତିକି କହିଲେ ଯଥେଷ୍ଟ ହେବ ଯେ, ବହୁ ଯୁଗର ସଂସ୍କୃତି, ବହୁ ଜାତିର ଆଚାର-ବ୍ୟବହାର, ବହୁ ଧର୍ମର ମର୍ମ ଓ ବହୁ ଦର୍ଶନର ସାରଭୂତ ନୀତି, ପଦ୍ଧତି, ଉପାସନା ଓ ମାର୍ଗରେ ଏହା ସଙ୍ଗଠିତ ହୋଇଅଛି । ଜଗନ୍ନାଥ ଏ ସମସ୍ତର ସୁସଙ୍ଗଠିତ, ସୁସମନ୍ୱିତ ଓ ସୁରୂପାୟିତ ଜୀବନ୍ତ ବିଗ୍ରହ । ପଣ୍ଡିତମାନଙ୍କ ମତରେ ଶ୍ରୀମୂର୍ତ୍ତିର ନାନା ବିଶେଷତ୍ୱଠାରୁ ଜାତିବର୍ଣ୍ଣ ନିର୍ବିଶେଷରେ ପ୍ରସାଦସେବନ ପର୍ଯ୍ୟନ୍ତ ବୌଦ୍ଧଧର୍ମର ପ୍ରଭାବସୂଚକ । ସେହିପରି ଜଗନ୍ନାଥ ନାମର 'ନାଥ' ଶବ୍ଦ ପର୍ଯ୍ୟନ୍ତ ଜୈନମତାନୁସରଣର ପ୍ରତୀକ ବୋଲି ଅନ୍ୟ କେତେକଙ୍କ ଦ୍ୱାରା ନିର୍ଦ୍ଧାରିତ । ଷଷ୍ଠ ଶତାବ୍ଦୀଠାରୁ ଯେତେବେଳେ ତାନ୍ତ୍ରିକତାର ଉତ୍ତରୋତ୍ତର ପ୍ରସାରହେଲା ଏବଂ ବାମାଚାର ସମ୍ପ୍ରଦାୟର ପ୍ରାଦୁର୍ଭାବ ହେଲା, ଏଣୁ ଜଗନ୍ନାଥ ଶକ୍ତିଉପାସକଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେବା ତ ଦୂରର କଥା, ସ୍ୱମତାନୁରୂପ ଭୈରବରୂପେ ପରିକଳ୍ପିତ ହୋଇଥିଲେ । ସମାଜ ଓ ଧର୍ମରାଜ୍ୟରେ ବିପ୍ଳବବିଧାୟକ ବଜ୍ରଯାନୀମାନେ ମଧ୍ୟ ଆଶ୍ରୟ ସନ୍ଧାନରେ ଉଦ୍ୟତ ହୋଇ ଜଗନ୍ନାଥଙ୍କୁହିଁ ସର୍ବପ୍ରଥମେ ସଭକ୍ତି ପ୍ରଣାମ କରିଅଛନ୍ତି । ବେଦାନ୍ତବିଶ୍ୱାସୀ ବୈଦିକ ପଣ୍ଡିତମଣ୍ଡଳୀ, ବାସୁଦେବ-ଉପାସକ ସାତ୍ତ୍ୱତ, ନାରାୟଣ-ଉପାସକ ରାମାନୁଜୀୟ, ରାଧାକୃଷ୍ଣ-ଉପାସକ ନିମ୍ବାର୍କ, ବିଷ୍ଣୁ-ଉପାସକ ମାଧ୍ୱ, ବାଳଗୋପାଳ ଉପାସକ

ବଲ୍ଲଭାଚାର୍ଯ୍ୟ, ଶ୍ରୀକୃଷ୍ଣଚନ୍ଦ୍ରଜ ଶ୍ରୀଚୈତନ୍ୟ—କେହି ଜଗନ୍ନାଥଙ୍କୁ ପରିତ୍ୟାଗ କରିପାରି ନାହାନ୍ତି । ଜଗନ୍ନାଥଙ୍କର ଏ ମହାମହିମକୁ ସଂଦର୍ଶନ କଲେ ମନେପଡ଼େ ଉପନିଷଦ୍‌ର ସେହି ପ୍ରସନ୍ନଗମ୍ଭୀର ମନ୍ତ୍ର—

ଯଥା ନଦ୍ୟଃ ସ୍ୟନ୍ଦମାନାଃ ସମୁଦ୍ରେ
ଅସ୍ତଂଗଚ୍ଛନ୍ତି ନାମରୂପେ ବିହାୟ
ତଥା ବିଦ୍ୱାନ୍ ନାମରୂପାଦ୍ ବିମୁକ୍ତଃ
ପରାତ୍ ପରଂ ପୁରୁଷ ମୁପୈତି ଦିବ୍ୟମ୍ ।

ଠିକ୍ ଏହିପରି ସମସ୍ତ ଧାର୍ମିକ ସମ୍ପ୍ରଦାୟ ନିଜ ନିଜର ସ୍ୱତନ୍ତ୍ର ସତ୍ତା ଜଗନ୍ନାଥ ପୀଠରେ ସମର୍ପଣ କରିଦେଇଛନ୍ତି । ବୌଦ୍ଧ ଓ ସ୍ମାର୍ତ୍ତଧର୍ମକୁ ବୈଷ୍ଣବଧର୍ମର ଅନ୍ତର୍ଭୁକ୍ତ କରିବା ପାଇଁ ଯେଉଁ ପ୍ରଚେଷ୍ଟା ହୋଇଥିଲା, ତାହାର ପରିଣତିରେ ଆଦିବୁଦ୍ଧ ଧାରଣା, ନବମ ଅବତାର ଧାରଣା, ତଥା ଅବତାରି-ବାଦ ପର୍ଯ୍ୟନ୍ତ ବହୁ ନବୋଦ୍ଭୂତ ବୈପ୍ଳବିକ ଚିନ୍ତାରେ ଜଗନ୍ନାଥଧର୍ମ ସ୍ୱୀୟ ପୁଷ୍ଟିଲତା ଓ ଜନପ୍ରିୟତା ସମ୍ପାଦନ କରିଥିଲା । ବଳରାମ ଦାସ ଦାଣ୍ଡି-ରାମାୟଣ ମୂଳରେ ଜଗନ୍ନାଥଙ୍କର ବନ୍ଦନା ପ୍ରସଙ୍ଗରେ ମାଧବ, ପୁରୁଷୋତ୍ତମ, ପରମ ପୁରୁଷ, ସହସ୍ରମୂର୍ତ୍ତି, ଦ୍ୱାଦଶାଙ୍ଗଳ, ବେଦାନ୍ତ ପୁରୁଷ, ନାରାୟଣ, ଅପାରମହିମା, ( ହୁଏତ ମହିମା ଧର୍ମରେ ଏ ଶବ୍ଦ ବୀଜୀଭୂତ ହୋଇଥାଇ ପାରେ) ମଦନ ଗୋପାଳ, ବିଷ୍ଣୁନାଥ, ଭଗବାନ ପ୍ରଭୃତି ଯେଉଁ ଧର୍ମମର୍ମଦ୍ୟୋତକ ଶବ୍ଦାବଳୀ ପ୍ରୟୋଗ କରିଛନ୍ତି, ତହିଁରୁ ପ୍ରତ୍ୟେକ ଶବ୍ଦରେ ଗୋଟିଏ ସାଂପ୍ରଦାୟିକ ମତବାଦର ସମନ୍ୱୟ ପ୍ରଚେଷ୍ଟାହିଁ ପ୍ରତିଭାତ ହୁଏ ।

ବ୍ରହ୍ମବାଦ, ଶୂନ୍ୟବାଦ, ନିରାକାରବାଦ, ଅଣାକାରବାଦ, ପ୍ରେମବାଦ, ଭକ୍ତିବାଦ, ଜ୍ଞାନବାଦ, ଯୋଗବାଦ ଓ ତନ୍ତ୍ରବାଦ ସ୍ୱୀୟ ନିର୍ଦ୍ଧିଷ୍ଟ ସୀମାରେ ସ୍ୱତନ୍ତ୍ର ମୁଦ୍ରାମଣ୍ଡିତ ହୋଇପାରନ୍ତି; କିନ୍ତୁ ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କର ବିରାଟ ବାହୁଚ୍ଛାୟା ତଳେ ସମସ୍ତେ ଆତ୍ମଗ୍ଳାନିରେ ବଶୀଭୂତ ଓ ଜଗନ୍ନାଥୈକପ୍ରାଣତାରେ ଅନୁକମ୍ପିତ । ବିଂଶ ଶତାବ୍ଦୀରେ ଶ୍ରୀମନ୍ଦିରରେ ହରିଜନ ପ୍ରବେଶ ପରେ ମଧ୍ୟ ଉତ୍କଳର ଏ ପରମ୍ପରାଗତ ଗଣଧର୍ମରେ ଅନାସ୍ଥା, ସଙ୍କୋଚ, ସ୍ୱୈରାଚାରିବାଦ କଳଙ୍କ-ପଙ୍କର ସ୍ପର୍ଶ ସୁଦ୍ଧା ଦେଖିବାକୁ ମିଳେ ନାହିଁ । ଔପନିଷଦ ଭାଷାରେ ଏବେ ମଧ୍ୟ ଜାତିବର୍ଣ୍ଣ ନିର୍ବିଶେଷରେ ଶିକ୍ଷିତ ଓ ଅଶିକ୍ଷିତ, ସମତଳବାସୀ ଓ ମାଳବାସୀ, ଯୋଗସାଧକ ଓ ଭକ୍ତ ଉପାସକ, ତୁଳସୀସେବୀ ଓ ବିଲ୍ୱଦଳସେବୀ, ପ୍ରତିମା ଉପାସକ ଓ ବ୍ରହ୍ମବାଦୀ—ସମସ୍ତଙ୍କର ଭକ୍ତିତରଙ୍ଗିଣୀର ଏକମାତ୍ର ରତ୍ନାକର ହୋଇଛନ୍ତି ନୀଳକନ୍ଦରନିବାସୀ ଜଗନ୍ନାଥ । ଜଗନ୍ନାଥ ଏବେ ମଧ୍ୟ ସାରା ଉତ୍କଳର ସେବା-ପୂଜା-ଆରାଧନା, ଉପାସନା ଓ ଅନ୍ତିମ-ଆଶ୍ରୟର ଏକମାତ୍ର ଲକ୍ଷ୍ୟସ୍ଥଳ ।

—*—

# ପରିଶିଷ୍ଟ

୧— ଦ୍ୱିତୀୟ ଖଣ୍ଡରେ କେତେକ ସ୍ଥଳରେ ଲେଖାଅଛି— "ଆଜକୁ........ବର୍ଷ ତଳେ ।" ଯଦି ଦ୍ୱିତୀୟ ଖଣ୍ଡର ଆରମ୍ଭରୁ ପୃ 52 ମଧ୍ୟରେ ହୁଏ, ତେବେ 1976ରୁ ହିସାବ କରି ଠିକ୍ କେତେ ବର୍ଷ ହେଲା ତାହା ସ୍ଥିର କରିବାକୁ ହେବ । ତା ନହେଲେ 'ବର୍ଷ ଗଣନା'କୁ ବାଦ ଦେବାକୁ ହେବ ।

୨—- ପୃଷ୍ଠା- 15 ଶେଷ ଅଂଶରେ ଅଛି ଯେ, ପୁରୀ ଦେଉଳ ଦ୍ୱାଦଶ ଶତାବ୍ଦୀର ଶେଷ ଭାଗକୁ ଅନଙ୍ଗ ଭୀମଦେବଙ୍କ ଦ୍ୱାରା ପୂର୍ଣ୍ଣତା ଲାଭ କରିଥିଲା । ଓଡ଼ିଶାର କିମ୍ବଦନ୍ତୀ ତଥା ଅନ୍ୟ ଅନେକ ପ୍ରମାଣ ବଳରେ କେତେକ ପଣ୍ଡିତ ସ୍ଥିର କରିଛନ୍ତି ଯେ, ପୁରୀ ଦେଉଳ ଅନଙ୍ଗଭୀମଦେବଙ୍କ ଦ୍ୱାରା ହିଁ ପୂର୍ଣ୍ଣ ହୋଇଥିଲା । କିନ୍ତୁ ଆଜି କେତେକ ପଣ୍ଡିତ ଅଭିଲେଖ ବଳରେ କହୁଛନ୍ତି ଯେ, ପୁରୀ ଦେଉଳକୁ ଚୋଡ଼ଗଙ୍ଗ ଦେବ ପୂର୍ଣ୍ଣ କରିଥିଲେ । ପର୍ଯ୍ୟଟକମାନେ ବା ତୀର୍ଥଯାତ୍ରୀମାନେ ଏତିକି ଜାଣିଲେ ଯଥେଷ୍ଟ ହେବ ଯେ, ମୋଟାମୋଟି 1150 ଠାରୁ 1220 ଭିତରେ ଏବେ ଠିଆ ହୋଇଥିବା ପୁରୀ ଦେଉଳ ନିର୍ମିତ ହୋଇଥିଲା । ଯେଉଁମାନେ ଇତିହାସ ଗବେଷଣା କରିବାକୁ ଚାହାନ୍ତି, ସେମାନେ ଠିକ୍ ତାରିଖ ବାହାର କରନ୍ତୁ ।

୩—ପୃଷ୍ଠା 16- ଏ ପୃଷ୍ଠାରେ କୁହାଯାଇଛି ଯେ, ଅଧରାତ୍ର ବେଳକୁ ଅର୍ଥାତ୍ ଜଗନ୍ନାଥଙ୍କର ପହୁଡ଼ ବେଳକୁ ମାହାରୀ ନାଚ ହୁଏ ଓ ଗୀତ-ଗୋବିନ୍ଦ ପଢ଼ାଯାଏ । ଏବେ ଗଲା କେତେବର୍ଷ ଧରି ପୂର୍ବପରି ମାହାରୀ ନାଚ ହେଉନାହିଁ । କିନ୍ତୁ ସେବକମାନେ ଗୀତଗୋବିନ୍ଦ ବୋଲୁଛନ୍ତି ।

୪—ପୃଷ୍ଠା-26-ମନ୍ଦିରର ନାମ ସୂର୍ଯ୍ୟମନ୍ଦିର । "ସୂର୍ଯ୍ୟନାରାୟଣ-ମନ୍ଦିର" ନାମକୁ ଛୋଟେଇ ଦେଇ ଲୋକେ ଏପରି କହିଥାନ୍ତି । ମାଦଳାପାଞ୍ଜି ଅନୁସାରେ ଭୋଇ ବଂଶର ନରସିଂହ ଦେବ ଭଗ୍ନ କୋଣାର୍କ ମନ୍ଦିରରୁ ଚନ୍ଦ୍ର ସୂର୍ଯ୍ୟଙ୍କୁ ଆଣି ଏଠାରେ ସ୍ଥାପନା କରିଥିଲେ । ଦେଉଳର ଗର୍ଭ-ଗୃହରେ ଗୋଟିଏ ସିଂହାସନ ଉପରେ ସୂର୍ଯ୍ୟନାରାୟଣ ମୂର୍ତ୍ତି ପୂଜା ପାଉଛନ୍ତି । ତାଙ୍କ ପଛକୁ ଲାଗିକରି ଆଉ ଗୋଟିଏ ମୂର୍ତ୍ତି ରହିଅଛି । ଆଲୁଅ ନହେଲେ ତାଙ୍କୁ ଦେଖିହେବ ନାହିଁ । ସେହି ମୂର୍ତ୍ତି ବିଷୟରେ ନାନାମତ ଅଛି । ଗୋଟିଏ ମତ ହେଉଛି, ସେ ମୂର୍ତ୍ତିଟି ମଧ୍ୟ କୋଣାର୍କର ଏକ ସୂର୍ଯ୍ୟମୂର୍ତ୍ତି । କଳାପାହାଡ଼ ଛୁଇଁ ଦେଇଥିବାରୁ ମାରା ହୋଇଯାଇଥିଲା । ତେଣୁ ବିଧି ଅନୁସାରେ ଆଉ ଗୋଟିଏ ପୂଜିତ ଦେବମୂର୍ତ୍ତି ପଛପଟେ ଏ ମୂର୍ତ୍ତିକୁ ରଖି ପୂଜା କରାଯାଉଛି ।

୫— ପୃଷ୍ଠା -46- ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀରେ ବଡ଼ ବଡ଼ କଇଁଚ ଥିବା କଥା କୁହାଯାଇଛି । କିନ୍ତୁ ଭାରତର ସ୍ୱାଧୀନତା ପରେ ପୋଖରୀର ପଙ୍କ ଉଦ୍ଧାର କରାଯାଇଥିଲା । କଅଣ ହେଲା କେଜାଣି, ଏବେ ଆଉ ସେଠାରେ କଇଁଚ ନାହାନ୍ତି କହିଲେ ଚଳେ । ପ୍ରାୟ ଦୁଇଶହ ବର୍ଷତଳେ ଗଞ୍ଜାମଜିଲ୍ଲା ଧୂମୁସର ରାଜ୍ୟର ବୁଗୁଡ଼ା ସହର ନିକଟବର୍ତ୍ତୀ ଗୋଲିଆ ଗ୍ରାମର "କଳିଯୁଗ-ଭୀମ" ହାଣ୍ଡିରାମ ହୋରା "ମାଣ୍ଡ-ଅଣ୍ଡିରା" ଦୁଇଟି କଇଁଚ ପୁରୀରୁ ତାଙ୍କ ଗାଁକୁ ନେଇଥିଲେ । ଏବେ ଗୋଲିଆ ଗାଁ ର ପୋଖରୀରେ ବହୁଶତ କଇଁଚ ଦେଖିବାକୁ ମିଳନ୍ତି ।

୬— ପୃଷ୍ଠା 109- ଏପୃଷ୍ଠାରେ କୁହାଯାଇଛି ଯେ, ଉପେନ୍ଦ୍ର ଭଞ୍ଜ ପୁରୀ ପଣ୍ଡିତ ସଭାରେ "ବୈଦେହୀଶ ବିଳାସ"ର ପ୍ରଥମ ପଦକୁ ବାରଦେବତାଙ୍କ ପକ୍ଷରେ ବାର ପ୍ରକାର ଅର୍ଥ କରିଥିଲେ । 1974ରେ ଓଡ଼ିଶା ସରକାର ବୈଦେହୀଶ ବିଳାସର ଯେଉଁ ଟୀକା ପ୍ରକାଶ କଲେ, ସେପର୍ଯ୍ୟନ୍ତ ଓଡ଼ିଶାର ବଡ଼ ବଡ଼ ଗ୍ରନ୍ଥାର୍ଥୀ ପଣ୍ଡିତମାନେ କେବଳ ତିନୋଟି ଅର୍ଥ କରି ପାରିଥିଲେ । କିନ୍ତୁ ସରକାରଙ୍କର ଏହି ଟୀକାରେ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ପ୍ରଥମଥର ପାଇଁ ଆଠଟିଅର୍ଥ କରିପାରି-ଥିଲେ । ଏବେ ତାଙ୍କର ଜଣେ ଗ୍ରନ୍ଥ ତଥା କଟକ ଜିଲ୍ଲାର ପଞ୍ଚାମୁଣ୍ଡାଇ ହାଇସ୍କୁଲର ଶିକ୍ଷକ ଶ୍ରୀ ଗୌରୀଶ୍ୟାମ ଦାସ ବାରହ ପ୍ରକାର ଅର୍ଥକରି ପାରିଛନ୍ତି ଏବଂ ପ୍ରଥମ ଖଣ୍ଡ ପ୍ରକାଶିତହୋଇ ବଜାରରେ ମିଳୁଛି ।

୭— ପୃଷ୍ଠା 110- ଏ ପୃଷ୍ଠାରେ ବୈଦେହୀଶ-ବିଳାସର ପ୍ରଥମ-ଭାଗର ମୁଦ୍ରଣ କଥା କୁହାଯାଇଛି । ତେବେ ପ୍ରଥମଭାଗର ମୁଦ୍ରଣ କାର୍ଯ୍ୟ ଚାରି/ପାଞ୍ଚ ବର୍ଷ ଚାଲିବା ପରେ 1974 ରେ ପ୍ରକାଶ ଲାଭ କରିଛି । ବୈଦେହୀଶ ବିଳାସର ଦ୍ୱିତୀୟ ଭାଗର ମୁଦ୍ରଣକାର୍ଯ୍ୟ ଏବେ 1989 ଅକ୍ଟୋବର ବେଳକୁ ଆରମ୍ଭ ହୋଇଛି । ଏହାକୁ ମଧ୍ୟ ସରକାରଙ୍କ ସଂସ୍କୃତି ବିଭାଗ ପ୍ରକାଶ କରୁଛନ୍ତି ।

୮—- ଯେଉଁଠାରେ 'ମାଇଲ' ଅଛି, ତାକୁ ଦେଡ଼ା କରିଦେଲେ, କି : ମି : ସଂଖ୍ୟା ମୋଟାମୋଟି ଭାବରେ ଜାଣି ହେବ । ୫ ମାଇଲ = ୮ କି : ମି : ।

୯— କାଞ୍ଚୀ-ଅଭିଯାନ-ଦ୍ରଷ୍ଟବ୍ୟ-ପୃଷ୍ଠା-୫୧ । ପୁରୁଷୋତ୍ତମ-ଦେବଙ୍କ କାଞ୍ଚି ଅଭିଯାନ ସମ୍ପର୍କରେ ନୂତନତଥ୍ୟ ମିଳିଛି । ଏବେ

ଅଭିଲେଖ ପ୍ରମାଣବଳରେ ଜଣାଯାଉଛି ଯେ 'ପୁରୁଷୋତ୍ତମ' ସ୍ୱୟଂ ନିଜେ 'ଜଗନ୍ନାଥ ମହାପ୍ରଭୁ' । ତାଙ୍କର 'ବନ୍ଧ' ସେବକ ଅନଙ୍ଗଭୀମଦେବଙ୍କୁ କାଞ୍ଚୀ ଅଭିଯାନ ପାଇଁ ପଠାଇଥିଲେ । ଏହି ଘଟଣା ଅନ୍ୟ ପ୍ରମାଣଦ୍ୱାରା ସମର୍ଥିତ । ଅନଙ୍ଗଭୀମଥିଲେ "ପୁରୁଷୋତ୍ତମଙ୍କ ପୁତ୍ର ।" 'ମାଣିକ ଗଉଡୁଣୀ' ଘଟଣା କୋଣାର୍କ ମନ୍ଦିରରେ ଅଛି । 'କୋଣାର୍କ ନିର୍ମାଣ ଆଗରୁ ଅନଙ୍ଗଭୀମଦେବ 'ପୁରୁଷୋତ୍ତମ ଜଗନ୍ନାଥ'ଙ୍କ କୃପାବଳରେ କାଞ୍ଚୀ ଯୁଦ୍ଧରେ ଜୟଲଭ କରିଥିଲେ ।

—*—

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୬ | ୧୨ | ତଦ୍ବାଦ | ତଦ୍ବଦ |
| ୭ | ୮ | ଭଗବତ୍ଭାବ | ଭଗବଦ୍ଭାବ |
| ୯ | ୮ | ମୂଷା । ଦେହରେ | ମୂଷା ଦେହରେ |
| ୧୬ | ୯ | ପାଶ୍ଚତ | ପଶ୍ଚତ |
| ୧୮ | ୨୦ | ସନ୍ତାନ | ସନ୍ତାନମାନେ |
| ୧୯ | ୧୫ | ହ୍ୱ | ହ୍ୱଁ |
| ୨୪ | ୬ | ଆପତ୍ତ୍ତି | ଆପତ୍ତି |
| ୨୪ | ଶେଷ- | ଧାମା | ଧାମ |
| ୨୫ | ୧୫ | ୨୫ | ୫୦ |
| ୨୬ | ୮ | ଭଗବାନଙ୍କର | ଜଗନ୍ନାଥଙ୍କର |
| ୨୮ | ୬ | ଦୋଳବେଦୀ | ସ୍ନାନବେଦୀ |
| ୩୧ | ୨ | ଡ଼ାହାଣ | ଠିକଏ ଆଗରୁ, ଡ଼ାହାଣ |
| ୩୨ | ୧ | ଅଠର | ଅନେକ |
| ୩୩ | ୩ | ଭିତରକୁ ଯାଇ | ଭିତରେ |
| ୩୪ | ୩ | ଶମ୍ଭୂ | ଶମ୍ଭୁ |

| | | | |
|---|---|---|---|
| ୪୧ | ୪ | ଚଉଦ | ଅନେକ |
| ୪୨ | ୮ | × | + |
| ୪୨ | ୧୦ | ଅର୍ଦ୍ଧାସମ | ଅର୍ଦ୍ଧାଶମ |
| ୫୪ | ୧୫ | କରିଥିବ | କରିଥିବା |
| ୫୫ | ୫ | ତଥା | ସିନା |
| ୫୫ | ୫ | ଜ୍ୟୋତକ ଅଟନ୍ତି | ଦ୍ୟୋତକ ନୁହନ୍ତି |
| ୫୬ | ୨୦/୨୧ | କଳ୍ପ ବାକ୍ୟର | ର |
| ୫୯ | ୧୨ | ସ୍ଫୁର୍ତ୍ତି | ସ୍ଫୂର୍ତ୍ତି |
| ୬୦ | ୧ | ବ୍ରାହ୍ମଣ ଧର୍ମ | ବ୍ରାହ୍ମଣ୍ୟଧର୍ମ |
| ୬୧ | ୪ | ମାଧ୍ୟ | ମଧ୍ୟ |
| ୬୨ | ୩ | ମୂର୍ତ୍ତିରୂପ | ମୂର୍ତ୍ତିରୂପ |
| ୬୨ | ୮ | ଶମଳାଙ୍କ | ଶମଳା ହିଁ |
| ୬୩ | ୨୦ | ସେମାନେ | ସେ ସବୁ |
| ୬୪ | ୧୦ | ରୁପୀ | ରୂପୀ |
| ୬୫ | ୧ | ସାମାଜିକ | ସାମାଜିକ ( |
| ୬୫ | ୫ | ଅନ୍ୟର ଯାହା | ନିଜର |
| ୭୧ | ୧୫ | ସଙ୍ଗେ | ସଂଘ |
| ୭୧ | ୨୦ | ମୂର୍ତ୍ତି | ମୂର୍ତ୍ତି |
| ୭୯ | ୫ | ଆସ୍ୱାସ୍ଥନ୍ | ଆସ୍ୱା'ପନ୍ |
| ୭୪ | ୧୩ | ଆର୍ଯ୍ୟ | ଆଶ୍ଚର୍ଯ୍ୟ |

| | | | |
|---|---|---|---|
| ୭୭ | ୧୭ | ନମୂନା | ନମୁନା |
| ୮୧ | ୧୭ | କଥା | କଥା ପଚାରିଥିଲି । |
| ୮୧ | ଶେଷ | ମୁଁ | ଶୁଣି ମୁଁ |
| ୮୪ | ୮ | କଥା ଥା | କଥା ଟା |
| ୯୨ | ୯ | ଚଢ଼ | ଚଢ଼ । |
| ୯୩ | ୨ | ଶ୍ରେଷ୍ଠକୁ କରିବା | ଅନ୍ୟକୁ ଶ୍ରେଷ୍ଠ କରିବା |
| ୧୦୨ | ୨୨ | ମୀବନ | ଜୀବନ |
| ୧୦୪ | ୧୫ | ବିଳାଶ | ବିଳାସ |
| ୧୦୫ | ୩ | ବୈନିଷ୍ଟିତ | ବୈ = ନିଷ୍ଟିତ |
| ୧୧୨ | ୨୦/୨୧ | ଇଷ | ଈଶ |
| ୧୧୪ | ୭ | ରସିକହାରାବଳୀ | ପ୍ରେମସୁଧାନିଧି |
| ୧୧୪ | ୮ | ବିଚକ୍ଷଣ | ବିଲକ୍ଷଣ |
| ୧୧୭ | ୭ | ଧ୍ୱମି | ଧ୍ୱନି |
| ୧୧୮ | ୧୯ | ଉଦ୍ଭମ | ଉଦ୍ଭବ |
| ୧୧୯ | ୧୪ | ଘରତରେ | ଘରଭର |
| ୧୨୦ | ୧୭ | ବିଲେକକେ | ବିଲୋକନେ |
| ୧୨୦ | ୧୮ | ବିଧିତ | ବିଦ୍ଧିତ |
| ୧୨୩ | ୧୯ | ପ୍ରସ୍ଫୁରିଉ | ପ୍ରସ୍ଫୁରିତ |
| ୧୨୩ | ୨୧ | ପ୍ରଭୁତ | ପ୍ରଭୂତ |
| ୧୨୪ | ୧୭ | ଗଣଜୀବନର | ଗଣଜୀବନରେ |

| | | | |
|---|---|---|---|
| ୧୨୫ | ୧୭ | ହୋଇଅଛୁ | ରହୁଅଛୁ |
| ୧୨୬ | ୨ | ସ୍ୱାର୍ଥବାଦ | ସାର୍ଥବାହ |
| ୧୨୬ | ୮ | ଉଦ୍ଧଳରେ | ଉତ୍କଳରେ |
| ୧୨୬ | ୨୨ | କାତ୍ତି | କୀର୍ତ୍ତି |
| ୧୨୮ | ୧୦ | ପଞ୍ଚ | ପଞ୍ଚସଖା |
| ୧୨୮ | ୧୫ | ଭୂମୂଳ | ଭୂମୂଳ |
| ୧୨୮ | ୨୦ | ସୋମବଂଶୀ | (ସୋମବଂଶୀ) |
| ୧୨୯ | ୧୩ | ଜୈନ୍ୟଧର୍ମ | ଜୈନଧର୍ମ |
| ୧୩୦ | ୧୧ | ଜଗଦ୍‌ଗୁରୁ | ଜଗଦ୍‌ଗୁରୁ |
| ୧୩୧ | ୧ | ଭାଗବତ | କେତେକ ପୁରାଣ |
| ୧୩୨ | ଶେଷ | ମାଧ୍ୱ | ମଧ୍ୱ |
| ୧୩୩ | ୧ | ବଲ୍ଲଭାସ୍ପ | ବଲ୍ଲଭାଗୃର୍ଯ୍ୟ |

— ❊ —